# କାବ୍ୟ ସଞ୍ଚୟନ

## ପ୍ରଥମ ଖଣ୍ଡ

ଖ୍ରୀ. ୧୯୨୩-୧୯୪୩



ବୈକୁଣ୍ଠନାଥ ପଟ୍ଟନାୟକ ।

ପ୍ରକାଶକ— ସବୁଜ ସାହିତ୍ୟ ସମିତି,

କଟକ ।

୧୯୪୪



ତେମନେ ପ୍ରୀତିରୁ ବନ୍ଧୁ ସୁଧା ପାର ଛାଣି ?
ପ୍ରୀତିବନ୍ୟା ତୁମ ଲାଗି ବହିବ ଉଜାଣି !
ଯଉବନ ଗଲେ, ଜରା ହେବ ଯଉବନ,
ତୁମ୍ଭ ପ୍ରୀତି ଶୁଷ୍କ କାଷ୍ଠ ଅଥବା ଚନ୍ଦନ —
ପଡ଼ିବ ସେ ଦାନ ଧରା ! କାହିଁ ପାଇଁ ଡର ?
ପାଷାଣରେ ହେଲେ ଘଷି ପୀରତି ସୁନ୍ଦର !
କାଠକୁ କରୁଛ ଯତ୍ନ, ଦେଖି ନ ଚନ୍ଦନ !
"ଗଲା ଗଲା ରୂପ" ବୋଲି ହୃଦୟ ସ୍ପନ୍ଦନ—
ଦିବସେ ସହସ୍ରଥର । କର ଅତି ଯତ୍ନ !
ବଢ଼ିଯାଏ ଅବାଳତା, ନାହିଁ ମିଳେ ରତ୍ନ !

—୩—

ଝଡ଼ିବାର ଯାହା ଝଡ଼ୁ ! କାହିଁକି ଆକୁଳ ?
ପୁଣି ଶୂନ୍ୟ ବ୍ରତତୀରେ ପରିପୂର୍ଣ୍ଣ ଫୁଲ !
ଗଲେ ପୁରାତନ ନବୀନର ଆଗମନ,
ସବୁ ପରିବର୍ତ୍ତନ ମେଳେ ବିକଶେ ଜୀବନ !
ହସନ୍ତ ଦେବତା, ଆଜ କିବା ଭ୍ରାନ୍ତିଭୟ ?
ଆବର୍ତ୍ତନେ ବିବର୍ତ୍ତନେ ଜୀବନର ଜୟ !
ଜୀବନ ଅମୃତ ରୂପ ପୀରତି ବିକାଶ .
ମୃତ୍ୟୁପାଶୁ ଦେଲେ ସବୁ ରହେ ପ୍ରୀତି-ହାସ !
ସେ ରୂପ ଲୋଡ଼ିବ ନାହିଁ ଶୃଙ୍ଗାର ରଚନା,
ସେଇ ତାପେ ନବଭାବେ ତା ପ୍ରୀତି ମୂର୍ଚ୍ଛନା;
ଜାଣେନା ଆଶଙ୍କା, ଭୀତି, ରଖିବା ଗୋପନ,
ଶତ ଘୂର୍ଣ୍ଣି-ଝଞ୍ଜା ଜାଣି କରଇ ବରଣ ।





ଜୟପୁରାଧୀଶ୍ୱର କଳା ପ୍ରପନ୍ନ ସାହିତ୍ୟ ସମ୍ରାଟ
ମହାରାଜ ଶ୍ରୀ ଶ୍ରୀ ଶ୍ରୀ ବିକ୍ରମଦେବ ବର୍ମା, ଡ. ଲିଟ୍.

# ସୂଚୀ

| ବିଷୟ | ପୃଷ୍ଠା |
|---|---|

# ଶୁଦ୍ଧିପତ୍ର

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୨୧ | ୨୨ | ଚକ୍ରବାକ | ଚକ୍ରବାଳ |
| ୭୧ | ୮ | ମୋହୁଥିଲା | ଶୋହୁଥିଲା |
| ୭୪ | ୭ | ସମାନ ପଡ଼ିବ | ସମ ନ ପଡ଼ିବ |
| ୧୦୮ | ୧୯ | ଶୃଙ୍ଗଳ | ଶୃଙ୍ଖଳ |
| ୧୧୦ | ୧୨ | ପିୟୂଷ | ପୀୟୂଷ |
| ୧୧୮ | ୯ | ଅଦେଶ | ଆଦେଶ |
| ୧୨୧ | ୧୧ | ଶରଣି | ସରଣି |
| ୧୪୪ | ୪ | ଶିରଷି | ଶିରସି |
| ୧୪୫ | ୧୧ | ବାହ୍ନୁଁଥିଲ | ଝୁହ୍ନୁଁଥିଲ |
| ୨୦[illegible] | ୧୮ | ରୁଣିତ | ରଣିତ |
| ୧୭୦ | ୧ | ଶିକତା | ସିକତା |
| ୧୭୮ | ୨୧ | ଜରେଦ୍‌ଗବ | ଜରଦ୍‌ଗବ |
| ୧୮୩ | ୧୦ | ନିରବେ | ନୀରବେ |
| ୧୮୯ | ୯ | ପ୍ରଭାକ | ପ୍ରଭାତ |
| ୨୧୭ | ୧୧ | ନିରୁପମ | ନିରୁପମ |
| ୨୧୮ | ୧୯ | ଶ୍ରବୁ | ସ୍ରବୁ |
| ୨୩୯ | ୧୭ | ନିମି | ନମି |
| ୨୫୧ | ୪ | ଖସିପଡ଼େ | ଖସିପଡ଼େ ତୁଳ |
| ୨୫୩ | ୨୦ | ଢେଉ | ଢେନ |
| ୨୫୮ | ୨ | ଜାଣି | ବାଣୀ |
| ୨୭୫ | ୧୮ | ଭୁମିର | ଭୁମିରେ |
| ୨୭୨ | ୨ | ଅନ ଯାଗର ବଦଳ | ଅନ ଯାଁ ଗରବ ଦଳ |
| ୩୦୫ | ୨ | ଯୁଗଣ | ଯୁଗଳ |

## ଉତ୍ସର୍ଗ

ଏ ଜୀବନ ପଥେ କେତେ ଜଣାଶୁଣା ଦେଖା,
ଗଲ ଯେ ମରମେ ଛନ୍ଦରୁ ଛନ୍ଦ ତୋଳି,
ଏ ମୋର ଅଲୋକ ଛାୟାର ସ୍ୱପ୍ନ ଲେଖା,
ଅରପିଲି ପଥେ ! ନାଅ ଅବା ନାହିଁ ତୋଳି ।

ଜୀବନର ପଥେ ନିମେଷ-ମିଳନ-ସାଥି !
ମୌନ ମୋ ବୀଣା, କେତେ ମତେ ଗଲ ଛୁଇଁ;
ବିହ୍ୱଳ କଲ ଭୁଲାଇଲ କାଳରାତି,
ବନ୍ଦନା ଗୀତେ ଧନ୍ୟ ହୋଇଛୁ ମୁହିଁ ।

ମଧୁର ଜ୍ୟୋତ୍ସ୍ନା, ସ୍ୱପ୍ନ ଅଳସ ଆଖି;
ମଧୁର ପୀରତି କରୁଣ କାନ୍ତ ବାଣୀ,
ମଧୁର ନିମେଷ ବନ୍ଧନ ପ୍ରୀତି ରାଖି,
ଧନ୍ୟ ଏ ଭବ ଜୀବନ ପୀୟୂଷ ଛାଣି ।

ଜୀବନ କ୍ଷୁବ୍ଧ ସିନ୍ଧୁ ବେଳାରେ ବୁଲି;
ଦେଖିଛୁ ଅମର ଅରୂପର ତେଜ କେତେ,
ବାସନା ମସୀରେ କଳୁଷିତ କାହିଁ ତୁଳି,
କ୍ଷମ ଅପରାଧ ମିଳିତ ମୋ ପଥେ ଯେତେ ।



# ନବ-ଯୌବନ

ମୁଁ ଗୋ, ଆସିଅଛି ନବ ଯୌବନ
ନବ ଯୌବନ !
ମୁଁ ଗୋ, ମଧୁସହଚର ଆସିଛି ଭାସି,
ଭରଅଛି କରେ କୁସୁମରାଶି,
ମୁଁ ଗୋ, ମଧୁ ଫୁଲେ ନିତ ହସଇ ରସଇ
ସ୍ୱପ୍ନେ ଭାସଇ
ସ୍ୱପ୍ନେ ଲସଇ
ସ୍ୱପ୍ନକୁ କରେ ଚୁମ୍ବନ !
ମୁଁ ଗୋ ଯୌବନ
ନବ ଯୌବନ !
ମଳୟ ତୀବ୍ର ନିଃଶ୍ୱାସ
ମୁଁ ଗୋ ନିଃଶ୍ୱାସ
ମୁଁ ଯେବେ ମଳୟ ପରଶେ ମାତଇ
ଜଗତ କହଇ
ନାହିଁ ମୋତେ ତଳେ
ବିଶ୍ୱାସ ଅଗୋ ବିଶ୍ୱାସ !
ମୁଁ ଗୋ, ମୋ ବାରତା ତାଳେ
ନୀରବ ଗାନେ,
ସକଳ ସୃଷ୍ଟି ସରଳ ପ୍ରାଣେ,
ହସାଏ ରସାଏ ପୁଣି ମୁଁ ଭସାଏ
ଅସୀମ ସ୍ୱପ୍ନେ
ଚନ୍ଦ୍ର କିରଣେ
ଚଳ ଚଳ ଚଳ

ଜଳ ଦରପଣେ
ମୁଁ କି ନା ଜଗତବନ୍ଦନ;
ନବ ଯୌବନ
ମୁଁ ଗୋ ଯୌବନ ।

ତରଳ କାନ୍ତ ସୁହାଣିରେ
ମୁଁ ଗୋ ସ୍ବପ୍ନଟି ପରି
ଭାସିଯାଏ;
ସ୍ନିଗ୍ଧ ଲଳିତ ଅଙ୍ଗଗନ୍ଧେ
ମାତିଯାଏ ।
କିଏ ଅବା ଜାଣେ ଗଭୀର ନୀରବେ
ଢାଳଇ ଯେତେ ମୁଁ କ୍ରନ୍ଦନ,
ଅପେ ମାତି ପୁଣି ମତାଏ ଆନକୁ
ଯୌବନ ମୁଁ ଗୋ ଯୌବନ !

ଭେଟିଲେ ଗୋଲାପୀ ଅଞ୍ଚଳ,
ମୁଁ ଗୋ, ଶିଶୁସମ ସଦା ଚଞ୍ଚଳ,
କେଉଁ ମଳୟ ପରଶେ ତରଙ୍ଗ ବଶେ
ସେ ଅଞ୍ଚ ଉଠିଲେ ଖେଳି,
ମେଲିଦିଏ ମୋର ପ୍ରଣୟ-ପସରା
ସକଳ ଲଜ୍ଜା ଠେଲି ।
ମୁଁ ଗୋ, ଅଙ୍ଗେ ତାହାର ଲାଖିଯାଏ
ମୁଁ ଗୋ, ରମଣୀୟ ମଧୁ ଶୁଖିଯାଏ,
ପୁଣି ବଡ଼ ସରଧାରେ ଡାକିଯାଏ,
ଅଜି, ଅସ ଗୋ ଅସ ଗୋ ଆଦରଣୀ ମୋର
ମଳୟେ ରଚିବା ଘର,

ମଧୁର ପ୍ରଣୟେ ଭୁଲିଯିବା କ୍ଷଣେ
ସକଳ ଆପଣା ପର !

ସଖି ! ତୁମେ ହେବ ମୋର ନନ୍ଦନ,
ପ୍ରିୟ ନନ୍ଦନ;
ତୁମ, ମଧୁର ସ୍ୱପ୍ନେ ବାହାରିବ ସୁଖେ
ଆସିଅଛୁ ମୁଁ ଗୋ ଯୌବନ
ନବ ଯୌବନ !

ମୁଁ ଗୋ, ବନ୍ଧୁଲ ଉଠଇ ତଟିନୀଟି ପରି
ହାସ୍ୟ ହେନାର ଗନ୍ଧେ,
ମେଲି ଚଲେ ମୁଁ ଶୂନ୍ୟ ଗଗନେ
ଲଳିତ ମଧୁର ଛନ୍ଦେ

ସେହି ସ୍ୱରେ—
ମୋର ଅନ୍ତର
ହୁଏ ଥରହର !

ନ ଜାଣଇ ଅବା କେଉଁ ମୋହନୀର
ମନ୍ତ୍ର ସେ ଗୋ
ମନ୍ତ୍ର !

ତହୁଁ, ଅଙ୍ଗେ ବିଜୁଳି ଚମକ ଫୁଟେ !
ବିଜୁଳି ପରି ମୁଁ ସୁରପଥ ଧରି
ଦିଗ ଦିଗନ୍ତେ ନିମେଷେ ଛୁଟେ !

ନ ମାନଇଁ ବାଧା, ବନ୍ଧ,
ସେବେ ଏ
ଚପଳ ଶିର ଅନନ୍ଦ !

ଖୋଜି ବୁଲେ କାହିଁ, କେଉଁ ରାଇଜରେ
ଅହା ସେ ଅତୁଳ ନନ୍ଦନ !
ମୁଁ ଗୋ, ଯୌବନ !

କେବେ କେବେ ମୁଁ ଗୋ    ଗୃହେଁ ରହେ ପ୍ରିୟ
ପଲ୍ଲୀବାଳାର ହଂସ ଗତି,
କକ୍ଷେ କଳସି    ସରଳ ଗୃହାଣି !
ଠେଲିପଡ଼େ ଦେଖି ତରଳମତି ।

ସରଳ ସେନେହେ    ନିମିଷେକ ଲାଗି
ବହ୍ୟୁଳ ମୁଁ ଗୋ ବହ୍ୟୁଳ,
ଢାଳଇ ତା କାନେ    ତା ମରମ ବାଣୀ
ବିଦ୍ୟୁତ ଶର ଚଞ୍ଚଳ !
ଆସିଛି ଆଜ ମୁଁ ଯୌବନ,
ନବ ଯୌବନ !

ଅଙ୍ଗେ ତୋହର    ପରଶି ଦଣ୍ଡେ
ମଳୟ କରିବ ବର୍ଷଣ !
ସନ୍ଧ୍ୟା ମୋହର ସୁନ୍ଦରୀ
ତାର ପରଶେ ଉଠଇ ମାତି
ସେ ଗୋ, ମୋହ କରେ କେତେ ବାନ୍ଧଇ ନିତି
କୁସୁମ କାନ୍ତକ କାନ୍ତ
ବକୁଳ ମଲ୍ଲୀ କରବୀର
ମୋର, ଅନ୍ତର କରେ ଅସ୍ଥିର
ମୋ ଗଳା-ଭୂଷଣ    ମଲ୍ଲୀମାଳାଟି
ବକୁଳ ମୋ କରକଙ୍କଣ

ଯହିଁ ଗାଏ ଗାର                    ମରମ ଦୁଆରେ

ବାଜି ଉଠେ ଖରେ,

ମଧୁ ରସଭରେ,

ବିଶ୍ୱ ଦୁଆରେ—

ଆସିଅଛି ଆଜି

ଯୌବନ ମୁଁ ଗୋ,

[୧୯୨୭]                    ଯୌବନ !



## ଚିଲିକାରେ ରାତ୍ରି

ଚିଲିକାର ଶୂନ୍ୟ ପରପାରୁ

ରାତ୍ରି ଧୀର ପଦେ ଚାଲି ଆସେ,

ସ୍ନିଗ୍ଧ ସେହି ଅସ୍ପଷ୍ଟ ଅନ୍ଧାରୁ

ଶତ ସ୍ୱପ୍ନ ଗଗନେ ବିଭାସେ ।

ଗମ୍ଭୀର ତା ସୌନ୍ଦର୍ଯ୍ୟମାଧୁର୍ଯ୍ୟ

ସରଗର ସୁଧାଧାର ସମ—

ଅଲୌକିକ, ମନେଁ ସଦା ସ୍ଫୁରେ

ତାହା ଲାଗି ବ୍ୟାକୁଳ ମରମ ।

ଛୁଇଁ ଛୁଇଁ ସ୍ନିଗ୍ଧ ସେ ଅଞ୍ଚଳ,

ଭୁଲିଆସେ ସ୍ୱପନ ଚଞ୍ଚଳ ।

ନୀରବ ସେ ସକଳ ନୀରବ !

ନିସ୍ତବଧ ସୌନ୍ଦର୍ଯ୍ୟ ଉତ୍ସବ !



ଏ ଶୋଭାର ନାହିଁ ତ ମରଣ
ପ୍ରାଣସ୍ପର୍ଶୀ ସତ୍ୟ ସୁମଙ୍ଗଳ;
କର ପୁବା ଅନନ୍ଦେ ବରଣ
ଦେଇ ପ୍ରେମ ପୂତ ଅଶ୍ରୁଜଳ ।

---

## ନିର୍ଜନ ଉପବନେ—

ନିର୍ଜନ ଉପବନେ ଏକାକିନୀ ଫୁଲ ଗୋ
ଭୁଲ ଚିର ସୁନ୍ଦର ନିଜରୂପେ ଭୁଲ ଗୋ ।
ନୀରବେ ରହିବ ରୁହ,
ମୋ ଗୀତଟି ଯିବ ଗାଇ,
ବସନ୍ତର ପରଶେ ମୃଦୁ ସମୀରଣେ ଝୁଲ ଗୋ ।
ରୂପର ଉପାସୀ ମୁଁ ଗୋ
କୁସୁମରାଣି
ତୋଳ ନିତ ଗନ୍ଧେ
ଯାଏଁ ଗୋ ଭାସି ।
ନୀରବ ମୋହର ଭୋଗ,
ନୀରବେ ପରାଣ ଯୋଗ,
ରୂପେ ଛନ୍ଦେ ସୁଗନ୍ଧେ
ହରାଏଁ କୂଳ,
ରୂପସ୍ରୋତେ ମଣିବାକୁ
ସଦା ଅକୁଳ ।
ମନ୍ଦେ ସମୀରେ ସହ
ଝୁଲ ଗୋ ଝୁଲ ।



## ପୌଷ ପବନ

ପରଶ ପଉଣ ପୌଷ ପବନ
ଛୁନ୍ନ କର ଏ ମରମ,
ସରଅସେ ସବୁ ସଙ୍ଗୀତ ମୋର
ମଉଳଇ ମୋର କରମ ।
ସେଇ ଫୁଲ ପର ପଡ଼ିବ ମଉଳି
ଶୀତଳ ଅଙ୍ଗେ ବୋଳି ଦେବ ଧୂଳି
ଝର ପଡ଼ୁ କରୁ ଅକୁଳ ଏ ତୁଳି
ବଢ଼ଇ ଅସୀମ ଭରମ
ଛୁନ୍ନ କର ଏ ମରମ ।

ସେ କାକଳି ପର ଅସୀମ ଶୂନ୍ୟେ
ନୀରବେ ଲଭିବ ମରଣ,
ଭୁଲିବ ଯେସନେ ଭୁଲଇ ସନ୍ଧ୍ୟା
ଜନମର ସବୁ କଷଣ ।
ସୁନ୍ଦର ଏଥି କାହିଁ ନାହିଁ ମିଳେ
ସ୍ୱପ୍ନ-ପୁଲକ ନ ପରଶେ ତଳେ
ନିଃସ୍ୱ ଜନର ଅସୀମ ପିପାସା
ନିଭାଇବା ତୁମ ଧରମ,
ଛୁନ୍ନ କର ଏ ମରମ ।



## ନୈରାଶ୍ୟ

ଚକିତେ, ସୁନ୍ଦର ମେଘ ମିଶୁଛି ଗଗନେ
ରହିଛି ଚାହିଁ,
ପରଶପରଶୀ ଉଷାର ମାଧୁରୀ
ନାଚୁଛି କାହିଁ ।
ସୁନ୍ଦର ଫୁଲ ପଡ଼େ ନିତ ଝରି
କରୁଣ କଣ୍ଠେ ଗୀତ ଯାଏ ମରି
ପ୍ରାଣ-ପରକାଶୀ ପୁଲକ କାକଳି
ନାହିଁରେ ନାହିଁ
ଧୂସର ମଳିନ ଦିଶଇ ନିମେଷେ
ରହିଛି ଚାହିଁ ।
ସମୀରଣ ଆଜି କରଇ ନିତି ଏଥି
ହାହାକାର ,
ଉଚ୍ଛୁଳି ଉଠଇ ସୀମାହୀନ ବ୍ୟଥା
ଶତଧାର ।
ଆକୁଳ କଣ୍ଠେ ନ ଧରଇ ଗାନ,
ସୁନ୍ଦର ଏଥି ଶର ଅବସାନ,
ନ ଶମଇ ତିଳେ ତରୁଣ ପିପାସା
ନିତ୍ୟ ଗାଇ,
ରହିଛି ଚାହିଁ ।



# ସନ୍ଧ୍ୟା

ସନ୍ଧ୍ୟା ! ତବ ବ୍ୟଥାର ଦାନ
ଯାଚଇ ଅଜ୍ଞ ପ୍ରାଣ,
ଢାଳ ଢାଳ ଅମୃତ ସେ
ଶାନ୍ତ ଅବସାନ !
ବେଦନା ସ୍ୱର୍ଣ୍ଣେ ମାଢବ ଶତ,
ସ୍ଫୁରିବ ପ୍ରାଣପରଶୀ ଗୀତ,
ଶୁଣିବ ଗଛ-ପତର ଲତା
ଅକୂଳେ ଡେର କାନ,
ଯାଚଇ ଅଜ୍ଞ ପ୍ରାଣ ।

ରିକ୍ତ ନିଃସ୍ୱ ଚିର ହତାଶ
ବେଦନା ମୋର ଧନ,
ବିଶ୍ୱ ସୁଖ ସ୍ୱପ୍ନ ହେଲେ
ନ ଲୋଡ଼େ କ୍ଷିପ୍ର ମନ ।
ଦିବସ ଶେଷେ ସକଳ ଧନ,
କରୁଣ ଗୀତେ ସମର୍ପଣ—
କରିବି ସୁଖେ ଜୀବନ ପୂର୍ଣ୍ଣ
ପୀରତି ସ୍ମୃତି ମ୍ଳାନ ।
ଶାନ୍ତ ଅବସାନ !



## ଉଷା

ହତାଶ ମୁଁ ଗୋ	ଜୀବନ ସାରା
ଜନମ ମୋର ବ୍ୟର୍ଥ
ଜୀବନ ଏକ	ଅଶ୍ରୁଧାରା
ନ ବୁଝେଁ କଣ୍ଟୁ ଅର୍ଥ ।
ଉଷା ! ଉଷା ! ନିଅ ହେ ଅଶ୍ରୁହାର
ନିଃସ୍ୱ ଜନ ଶତ ସମ୍ପଦ ସାର !
ଗାଇଛୁ କେତେ ବିକଳ ସ୍ୱରେ
ଏ ବୀଣା ମୋର ଅକୂଳ ଭରେ
କିଏ ବା ତାକୁ ଶୁଣିଛୁ ଥରେ ?
ପିପାସା ଅଶା ବ୍ୟର୍ଥ,
ନ ବୁଝେଁ ତେଣୁ
ଏଇ ଜୀବନ ଅର୍ଥ ।

ମୋ ଅଖି ଅଗେ ସନ୍ଧ୍ୟା ରବି
ଯାଇଛୁ କେତେ ବନ୍ଧୁ,
ବିକଳେ କେତେ ଡାକିଛୁ ତାକୁ
ମରମ କଥା କହୁ,
ଉଦ୍‌ଭ୍ରାନ୍ତ ମୁଁ ହୋଇଛୁ ଦେଖି
ସକଳ କର୍ମ ମୋର ଉପେକ୍ଷି
ପକ୍ଷୀ ତୁଳେ ଗାଇଛୁ ଯେତେ
ପବନେ ଗଲା ମିଶି
ଦେଖିଛୁ କେତେ ନିଶି ।

ଉଷା ! ଖାଲି ରହୁଛୁ ଅଶ୍ରୁ ଧାର
ହତାଶ ପ୍ରାଣ ଭଗ୍ନ ହାହାକାର ।
ମଞ୍ଜିକା ଗଲା ତୋଳିଲି ନେତେ
ଟଗ୍ର ଫୁଲ ସାର,
ହାସ୍ନା ହେନା ବକୁଳ ମଲ୍ଲୀ
ଚମ୍ପକର ହାର ।
ସକଳ ମୋର ମଳିନ ନାରଖାର,
ସକଳ ଗନ୍ଧେ ଭରୁଛୁ ହାହାକାର,
ସୌନ୍ଦର୍ଯ୍ୟ ଏ ଜୀବନେ ସଦା ବ୍ୟର୍ଥ
ଉଷା ! ଟେଉଣ୍ଣ ବୁଝିଇ ନାହିଁ
ଭଗ୍ନ ଜୀବନ ଅର୍ଥ ;
ରଚଇ କେତେ କଳ୍ପନାର •
ମୁଗ୍ଧ ମଧୁ ଛନ୍ଦ
ଲେଖଇ ଛବି ପରାଣ ଢାଳି
ଏ କି ହତାଶ ଗନ୍ଧ !
ସମୀର ପାଶେ କରୁଛୁ ବ୍ୟଙ୍ଗ
ଗଗନ କେତେ ଦେଖାଏ ରଙ୍ଗ
ଛିନ୍ନ ତୂଳି ଧୂଳିରେ ଯାଏ ଲୋଟି
ସକଳ ନେଇ ଅନ୍ତରାଳେ
କାନ୍ଦ ଉଠେ
ଭଗ୍ନ ପ୍ରାଣ ଗୋଟି ।
ତୁମ ଅରୁଣ ଅଞ୍ଚଳେ ଗୋ
ଅବର ମୋର ତନୁ,
ସକଳ କ୍ଷତ ନାଅ ଗୋ ହର ମନୁ ।

---

## ଅରୁଣ

ଅରୁଣି ! ତାଲ ପରାଣେ ପରବାସତା,
ନିଭ ଯାଉ ମୋ ଦୁଃଖ କ୍ଷତ ବ୍ୟଥା !
ଅସିଛି ଅଜ୍ଞ ପଖାଳ ତନ୍ତୁ,
ସକଳ ମାୟା ଲୁଠାଇ ମନ୍ତ୍ର,
ଶୁଣିବ ବସି ଅରୁଣ-ବନ୍ଧୁ
ପରାଣପ୍ରିୟ କଥା,
ତାଲ ହେ ପରବାସତା !
କାହାର ସ୍ନିଗ୍ଧ କିରଣ ଝଟଳ
ତରଳ ଜଳ ବକ୍ଷେ ?
ପକ୍ଷୀ ଶତ ଯାନ୍ତି ଉଡ଼ି
କେଉଁ ପ୍ରିୟର ଲକ୍ଷ୍ୟେ ?
କେଉଁ ସୁନ୍ଦର ଅସୀମ ଅଶେ;
ତରଣୀ ଦୂରେ ମୁଗ୍ଧେ ଭାସେ ?
ରୌଦରେ କି ଶାନ୍ତ-ସ୍ୱର
ପୁଲକ ମାଦକତା !
ଅସୀମ ତେଜେ ଭସାଇ ପ୍ରାଣ
ଭୁଲିବ ସବୁ ବ୍ୟଥା !

---

## ଛୁଟାପଦ

— ୧ —

ଉଦାସ ନୟନେ ଚୋଲ୍ପ ରହିଛି ଚୁହିଁ
ସ୍ନିଗ୍ଧ ସୋହାଗେ ଡାକଯାଏ ଉଷା "ସହି !"
ପତର ଗହଳ ଖଞ୍ଜନ ଉଠେ ଗାଇ,
ଅଳସ-ସ୍ୱପ୍ନେ ବେଳା ମୋର ଯାଏ ବହି !

— ୨ —

ଏ ଯେ ତୁମ କ୍ଷୀଣ କଣ୍ଠସ୍ୱର
ଥର ଥର ଦୂରୁଁ ଅସେ ଭାସି !
ପିପାସାରେ ପ୍ରାଣ ଜର ଜର
ନୀରବ ଗୋ କଳପନା ରାଶି ।
ବ୍ୟଥାର କି ଅତଳ ଅନନ୍ଦ
ନୈରାଶ୍ୟର ନିଶବଦ ଶାନ୍ତି,
ଗଭୀର ସେ ସେନେହର ଛନ୍ଦ !
ସ୍ୱପ୍ନେ ଝଲେ ଅନବଦ୍ୟ କାନ୍ତି !
ସେ କ୍ଷୀଣ ସଙ୍ଗୀତେ ସେହ୍ନ ସ୍ୱରେ
ମିଶୁ ଏ ମୋ କରୁଣ ଜୀବନ,
ହତାଶ ମୁଁ ଚିର ସୁଖେ ମରେଁ
ବହୁ ଶତ ବିଫଳ ସ୍ୱପନ ।



## କବି ପ୍ରେୟସୀ

— ୧ —

ତୁମେ, ଭାସିଯାଅ କାହିଁ ସନ୍ଧ୍ୟା ମଧୁର ସ୍ୱପନେ
ତୁମ, ମୁଖର ନୂପୁର ମନ୍ଦେ ବାଜଇ ମରମେ ।
ତୁମେ, ସେନେହ ସୋହାଗେ ଗ୍ଲହିଁ ଯାଅ,
ତୁମେ, ଅକୁଳେ ଗୀତଟି ଗାଇଯାଅ,
ମୁଁ ଗୋ, ନୀରବେ ଢାଳଇ ବ୍ୟଥାର ଅଶ୍ରୁ
ବ୍ୟଥାରେ ଅନାଏଁ ଗଗନେ,
ଭାସିଯାଅ କେଉଁ ସ୍ୱପନେ ।

ତୁମେ, ମୋହଲାଗି ସିନା ବହିଛ ପରାଣେ
ଗଭୀର ହତାଶ ଛନ୍ଦ,
ବେଦନା ବିମଳାନନ୍ଦ,
ତେଣୁ, ନିମେଷେ ଦେଖିଲେ କରୁଣ ରୂପଟି
ଗଳାପଡ଼େ ବାଧା ବନ୍ଧ !
ଥାଅ ଥାଅ ଦୂରେ ପାଖେ ଆସ ନାହିଁ,
କରୁଣ ନୟନେ ଦୂରୁ ଯାଅ ଚାହିଁ,
ତୁମରି ଧିଆନେ ଦୁଃଖର ଗୀତ
ଗୁନ୍ଥିବି ବସି ଜୀବନେ
ସନ୍ଧ୍ୟା ମଧୁର ସ୍ୱପନେ ।

—୨—

ତୁମେ, ନବୀନ ଉଷାର ଗୋଲାପ ଗନ୍ଧବହ,
ମୁଁ ଗୋ, ଅସୀମ ସେ ପଥେ ଅନୁସରେ ଅହରହ,
ଚରଳ ସେ ରୂପେ ହୁଏ ମୁଁ ଅମୃହର

ତୁମେ, ନିଶୀଥ ସ୍ୱପ୍ନ ! ଦିଅ ନାହିଁ ଥରେ ଧରା !
ତୁମେ, ଗନ୍ଧ-କୁସୁମ-ସୃଷ୍ଟି,
ତୁମେ, ଉଷାର ସ୍ନିଗ୍ଧ ଦୃଷ୍ଟି,
ତୁମେ, ଅମର ସ୍ୱପ୍ନାନନ୍ଦ,
ତୁମେ, ସୁପ୍ତ କବିର ଛନ୍ଦ,
ତୁମେ, ଅଧୀର ସନ୍ଧ୍ୟାତାରା,
ତୁମେ, ମଳୟ-ମଦିର-ଧାରା !
ତୁମେ, ମଧୁ ବସନ୍ତ ଚୁମ୍ବନ
ତୁମେ, ତୃଷିତ ନୟନ-ନନ୍ଦନ,

ମୁଁ ଗୋ, ପାଇ ପାଏ ନାହିଁ ପ୍ରୀତିଛଟା-ସୁଧା-ଅନ୍ତରେ
ତୁମେ, ବ୍ୟାପିଯାଅ କ୍ଷଣେ ଭଗ୍ନ ପରାଣ ଯନ୍ତରେ,
ମୁଁ ଗୋ, ମୁଗ୍ଧ ନୟନେ ଅକୂଲତା ଭର ଗୁହେଁ;
ମୁଁ ଗୋ, ସନ୍ଧ୍ୟା ସମୀପେ ବିହ୍ୱଳ ଗୀତ ଗାଏ,
ତୁମେ କର କହଁ ମୋତେ ଅସୀମ ପଥର ଯାତ୍ରୀ
ମୁଁ ଗୋ, ସଙ୍ଗୀତ ଗାଇ ଗୁଲଥାଏଁ ଦିବା ରାତ୍ରି ।

—୬ ।—

ତୁମେ, ଭାସିଯାଉଥିଲ ନୀଳ ଅକାଶର ପଥେ,
ତୁମ, କ୍ଷୀଣ କଟିତଟେ ଅବୃତ ଘନ ମେଖଳା,
ତୁମେ, ସ୍ୱପ୍ନ ଚୁମ୍ବି ହସୁଥିଲ ମନମତେ,
ଅଗୋ, ନବଯୌବନ ଅମ୍ବରେ ନବ ଚପଳା !

ଚନ୍ଦ୍ର ମନ୍ଦାର ଗୋଲାପ ଗନ୍ଧେ,
କଣ୍ଠ ତରୁଣୀ ତରଳ ଛନ୍ଦ,
ଝରୁଥିଲା ଯେବେ-ସମୀର ଅନ୍ଧ
ଚୁମ୍ବି ଅଙ୍ଗ ଶର ଅନନ୍ଦ !

ହସି ଗୁଲୁଥିଲ ଅପଣା ରୂପେ ନିମଗନ,
ବୁଲି ବୁଲି କେତେ ଦେଖୁଥିଲ ସ୍ୱର୍ଣ୍ଣ ସପନ !
ବକୁଳ ମଲ୍ଲୀ ହାସ୍ନା ହେନାର ସଙ୍ଗେ,
ଚହଟି ଉଠିଲେ ତରୁଣ ସ୍ୱର୍ଣ୍ଣ ରଙ୍ଗେ,
ନବ ବିଳାସିନୀ ଗ୍ଧରି ହୋଇଥିଲ ଚନ୍ଦନ,
ବିହ୍ୱଳେ ଗ୍ରହୁଁ ଗାଇଲ "ସ୍ୱର୍ଗ ! ନନ୍ଦନ !"

—୪—

ମଧୁର ଆଜ ଜ୍ୟୋସ୍ନା ରାତି
ପ୍ରେୟସୀ ମୋ ଆସ,
ହାସ୍ନା ହେନାର ଗନ୍ଧ-ବନେ
ଲଭିଛୁ ପ୍ରଣୟ ରାସ
ଗୋଲାପ କେତେ ସ୍ୱପ୍ନ ଦେଖେ,
ବାଉଳେ କବି ଛନ୍ଦ ଲେଖେ ,
ସ୍ୱପ୍ନର ଏ ସୃଷ୍ଟି ମେଳେ
ମଳୟ ମେଲେ ବାସ,
ଆସ ଗୋ ପ୍ରିୟ ଆସ ।

ଜ୍ୟୋସ୍ନା ଅଙ୍ଗେ ଢାଳିବ ବସି
ମୁଗ୍ଧ ତରଳ ଦୃଷ୍ଟି,
ସ୍ୱପ୍ନଭରା ଗଗନୁ ହେବ
ପ୍ରଣୟ-ଫୁଲ ବୃଷ୍ଟି ।
ସ୍ୱପ୍ନେ ବାଳା ଅଳସ ମୁଖେ,
ନାଚେଇ ଥରେ ମରିବ ସୁଖେ,
ଜୀବନ ମୋର ପୂର୍ଣ୍ଣ ହେବ
ଦେଖି ସେ ମୃଦୁ ହାସ
ପ୍ରେୟସୀ ମୋ ଆସ ।

—୫—

ସୁନ୍ଦର ମୋର ରଞ୍ଜିତ ମେଘ
ସୁନ୍ଦର ମୋର ଗଗନ,

ସୁନ୍ଦର ନୀଳ-ସଲିଳ-ସୃଷ୍ଟି
ସୁନ୍ଦର ମୃଦୁ ପବନ ।
ସୁନ୍ଦର ତୁମ-ସଙ୍ଗୀତ,
ଅଗୋ, ସୁନ୍ଦର ଉଷା ଇଙ୍ଗିତ,

ସୁନ୍ଦର ମୋର ଅଲୋକେ ଖେଳଇ
ନିତ୍ୟାନନ୍ଦ ଜୀବନ
ସୁନ୍ଦର ଏଇ ଭୁବନ ।

କୁସୁମ-ବିଳାସୀ ସନ୍ଧ୍ୟା ମୋର ଗୋ
ଧୀରେ ଚଳିଅସେ ସୁନ୍ଦର,
ଲଳିତା ଗ୍ରୀବି ସୁନ୍ଦର ପୁଣି
ସମୀରଣ ଧୀର ମର୍ମର ।
ତୁମ ପାଶେ ବସି
ଲୋଡ଼ଇଁ ନାହିଁ ମୁଁ ମରଣ,
ମୁଁ ଗୋ, ଅନନ୍ଦ କରେ ଚୟନ !
ନିତ୍ୟ ନବୀନ ସୃଷ୍ଟିରେ ନିତି
ରଚଇ ମୋହର ସ୍ୱପନ !
ସୁନ୍ଦର ଅଜ ଭୁବନ !

—୬—

ଏ ଜୀବନ ଗୋଟା ଧର ବାଜଇ ଗୋ
ବ୍ୟର୍ଥତାର କରୁଣ ରାଗିଣୀ,
ତରୁଣ ନିଃଶ୍ୱାସେ ଛନ୍ଦେ ହାହାକାରେ
ଯୌବନର ଉନ୍ମାଦନା ଜାଣି ।

ଗଗନେ ପବନେ ମୋର ଉଗ୍ର ହାହାକାର,
ମୋ ଲୋତକ ଭରେ ଘାସ କୁସୁମ ନୀହାର,
ଶ୍ୟାମଳ ସ୍ୱପନେ ମୋର ଝଲଇ ବେଦନା,
ବୈଦନାର ସୃଷ୍ଟି ନିତ୍ୟ କରେ କଳପନା ।
ଶୁଣିବ ବେଦନା ମୋର ? ଆସ, ଆସ,
ସ୍ନିଗ୍ଧ ପଥ ରହିଛି ଅନାଇଁ,
ନିରେଖି ସେ ଛଳ ଛଳ ବେନି ଆଖି
ପୁଲକେ ମୋ ଛନ୍ଦ ଯିବ ଗାଇ ।

ସଂସାର କରନ୍ତୁ ମୋତେ କେତେ ଉପହାସ,
ମଉନେ ସହନ୍ତୁ ଦୁଃଖ ପଦାଘାତ ତ୍ରାସ,
ମାତର ଗୋ ବନ୍ଧୁ ଦନ୍ତୁଁ ଅଛି ଅଭିଳାଷ,
ଶୁଣିବ ମୋ ଗୀତ ତୁମେ ବ୍ୟାକୁଳ ପବଣେ—
ଚିର ଭଗ୍ନ ଅନ୍ତରର ଭାଷ,
ଅଛି ଏକ ଦୀନ ଅଭିଳାଷ ।

ପୂର୍ଣ୍ଣ ହେବ ଜୀବନର ବିପୁଳ କ୍ରନ୍ଦନ
ବ୍ୟର୍ଥତାର ଦୁରନ୍ତ ରାଗିଣୀ,
ସେଦିନେହେ କରିବ ଅର୍ଦ୍ର ଶତକ୍ଷତ ବ୍ୟଥା
ମାଧୁର୍ଯ୍ୟର ପ୍ରତିଦାନେ ଦୁଃଖ ନେବ କିଣି ।

— ୬ —

ଆଜ, କୁସୁମ ରାଜ୍ୟେ ଉଡ଼ିଯାଏ ମୋର ମନ,
କୁସୁମ ସ୍ୱପ୍ନ ଦେଖେଁ ବସି ଅନୁକ୍ଷଣ,
କୁସୁମ-ମଧୁର ପିଇବାକୁ ମୁଁ ଗୋ ବାଇ,
ଛାଡ଼ିଦିଅ ପ୍ରିୟ ପ୍ରଣୟେ କାର୍ଯ୍ୟ ନାହିଁ ।

କେତେ, ଗୋଲାପ ମଲ୍ଲୀ ବକୁଳ,
ନବ, ଚମ୍ପକ ହେନା ଅତୁଳ,
ମୃଦୁ, କାମିନୀ ନଅଳୀ ଗନ୍ଧ
କରେ, ରଜନୀ ଗନ୍ଧା ଅନ୍ଧ,
ମୁଁ ଗୋ, ଫୁଲ ଉପବନେ ଭ୍ରମର,
ମୁଁ ଗୋ, ପରାଗର ରାଗେ ଅମର,
ଯାଉଦିଅ ପ୍ରିୟେ ଯାଉଦିଅ ବେନି କର
ନିଶୀଥ ସ୍ୱପ୍ନ ଭୁଲି ଆଜ କର ପର ।
କ୍ଷିପ୍ର ପ୍ରାଣର ସୀମାହୀନ ଏତେ ଆଶା,
ନିଭାଇବ କାହିଁ କ୍ଷୁଦ୍ର ପ୍ରଣୟ-ଭାଷା ?
କୁସୁମ ଗନ୍ଧେ ରୁପେ ଆନନ୍ଦେ ଭାସେ,
ମନ ବଳେ ଆଜ ମରିବାକୁ ଫୁଲ ହାସେ,
ତୁଟାଇ ଦିଅ ଗୋ ବନ୍ଧନ
ଡାକେ ମୋତେ ଦୂର ଅମରାବତୀର ନନ୍ଦନ ।

---

## ଶାରଦ ସ୍ୱର୍ଣ୍ଣ

ଆକାଶ ଆଜ ଶୁଭ୍ର ବେଶେ
ହେଲା ଚଞ୍ଚଳ,
ସମୀରଣେ ଖେଳି ବୁଲେ
ଏକା ଅଞ୍ଚଳ !
ଶେଫାଳିକା ଅମ୍ଳହରା,
ତାର, ଗନ୍ଧ ଚତୁର୍ଦ୍ଦିଗ ଭରା
ଆଜ ବିଶ୍ୱପ୍ରାଣ ପରଶି ଗଲା
ପୁଣ୍ୟ ମଙ୍ଗଳ !

ସେ ଯେ, କାଶ ଫୁଲେ ଭରନ୍ତୁ ତନୁ
ଶ୍ୟାମଳ ଶିରେ
ତାର, ମନ୍ଦହାସ ଖେଳି ବୁଲେ
ନଭେ ଅସ୍ଥିରେ !
ମାଳତୀ ତାର କଙ୍କଣ,
ସ୍ବରେ, ଅଙ୍ଗ ଗନ୍ଧ ଚନ୍ଦନ,
ପାଗଳ ସେ ଯେ ଖେଳି ବୁଲେ
ଦଳି ଅର୍ଗଳ ।

ଆସ ଆଜ ରୁଦ୍ଧ ଦ୍ୱାର
ମୁକ୍ତ କର ଗୋ,
ହସ ଖେଳେ ଆପଣା ପ୍ରାଣେ
ନେବା ବର ଗୋ ।
ବିଳମ୍ବ ଆଉ ନ କର ଗୋ
ନୀରବେ ଆଉ ନ ଭର ଗୋ
ଏଇ ସମୀର ପଥ ଧରି
ଗୁଣ୍ଠ ସର ଗୋ ।
ହସ ଖେଳେ ଆପଣା ପ୍ରାଣେ
ନେବା ବର ଗୋ ।
ବଳକା ଆଜ ମାଳ ମାଳ,
ଲକ୍ଷ୍ୟ କର ଚକ୍ରବାକ,
ଶାଆନ୍ତ ସବୁ ସ୍ୱପ୍ନ ପରି
ମୁଗ୍ଧ ବିହ୍ୱଳ,
ଆକାଶ ଆଜ ଶୁଭ୍ର ବେଶେ
ସ୍ନେହେ ଚଞ୍ଚଳ ।

---

# ପ୍ରୀତ ଆବାହନ

ତୁମେ, ଟୋଲ ହୋଇ ଅସ ଅରୁଣ ଉଷାର କିରଣ
ତୁମ ପଦଶୁଞ୍ଜାରେ ଚମକି ଗୃହେଁ ସ୍ୱପନେ
ମୁଁ ଗୋ, ଭୁଲିଯାଏଁ ମୋର ହତାଶ ବିକଳ ଜୀବନ
ତୁମେ, ନିତ ନିତ ମୋତେ ଡାକିନିଅ ମଧୁବ୍ରଜନେ ।
ଅସ ଅସ ମୋର ସୁଖ ଅବସାନେ,
ପ୍ରଭାତ ଗୋଲାପ ଖୋସି ବେଣୀକାନେ,
ଭାଦର ବାଦଲେ ଉଡ଼ାଇ ଅଳକ,
ଫଗୁଣ ପବନେ ଜଗାଇ ପୁଲକ,
ତୁମେ ଅସ ଧୀରେ ଅସ,
ଦେଖିଲେ ସେ ରୂପ କାହିଁ ଯାଏ ମୋର ତ୍ରାସ ।
ତୁମେ, ଶୀତଳ ଗଣ୍ଡେ ଢାଳିଯାଅ ଶତ ଚୁମ୍ବନ,
ତୁମେ, ପ୍ରଣୟର ମଦେ ଭୁଲିଯାଅ ବାଧାବନ୍ଧନ,
ତୁମେ, ଅସୀମାନନ୍ଦ ଅସୀମ ପ୍ରଣୟଭର,
ତୁମ, ଗମ୍ଭୀର ହାସେ ମରେଁ ମୁଁ ଆତ୍ମହରା,
ମଧୁର ପ୍ରଣୟ ! ମଧୁର ସ୍ୱପ୍ନ ପ୍ରିୟା,
ଅଶେଷାନନ୍ଦ ପୁଲକ ଉଠଇ ହିୟା !
ମରଣ ! ମରଣ ! ଅସ ନାହିଁ, ରହ ଦୂରେ !
ଅଶେଷ ପ୍ରଣୟ ଉତ୍ସବ ମୋର ପୁରେ ।

[୧୯୨୪]



# ଗୋଲାପ ପିପାସା

ଏଇ ଗୋଲାପ-ପ୍ରାଣର ଅସୀମ ପିପାସା
କାହୁଁ ବା ତୁଟିବ ସୁନ୍ଦର—
ତୁମେ, ଚାହିଁଯାଅ ଖାଲି ଚାହିଁଯାଅ,
କହିବାକୁ ବ୍ୟଥା ନାହିଁ ମୋର ଭାଷା,
ଜାଣିଥ ସ୍ୱପ୍ନେ ସଞ୍ଚର—
ତୁମେ, ଗାଇଯାଅ ଖାଲି ଗାଇଯାଅ !

ଯେତେ ଏଇ ଆଖି ଝରେ ଲୁହଧାର,
ଯେତେ ଏ ପରାଣ କରେ ହାହାକାର,
ଯେତେ ପୁଣି କ୍ଷତ ବିକଳ ପରସ,
ଜୀର୍ଣ୍ଣ ଜୀବନେ ଦୀର୍ଘଶ୍ୱାସ,
କାହିଁ, କାହିଁ ତୁମ ଅନ୍ତରେ ଥାନ ?
ଚାହିଁଯାଅ ଖାଲି ଚାହିଁଯାଅ;
ମୋର, ଜୀବନର ସୁଖ ଶତ୍ର ଅବସାନ !
ପାର ଯେବେ ଥରେ
କରୁଣ ରସରେ—
ଗାଇଯାଅ ଖାଲି ଗାଇଯାଅ ।

ଏ ଅଳସ ବୀଣା ତୁମକୁ ଚାହିଁ ମୁଁ
ଲୋଟାଇ ଦେବି ଗୋ ଧୂଳିରେ
ସନ୍ଧ୍ୟା-ଚନ୍ଦ୍ର-ରୂପ-ଆନନ୍ଦ
ନ ଲେଖିବ ଏଇ ତୂଳିରେ !
ତୁମେ, ଚାହିଁଯାଅ ଖାଲି ଚାହିଁଯାଅ !
ତୁମ, କରୁଣ ଛନ୍ଦ ବାଇଯାଅ !

ଶୁଣିବ ! ଶୁଣିବ ଅକୁଳ ନୀରବେ,
ଶୁଣଇ ଯେସନେ—
ଲୋତକ-ନୟନେ—
ନୀଳ ଘାସ ଫୁଲ,
ସନ୍ଧ୍ୟା ନୀରବ
ଛନ୍ଦ ଅତୁଳ,
ଶୁଣିବ ସରବ
ଗାଇଯାଅ ତୁମେ ଗୁହିଁଯାଅ !
ସେଇ ସଙ୍ଗୀତ ଅଧୀରେ ଆସିଲେ ସର,
ମୁଁ ଗୋ ତୁମର ଚପଳ ଗୁହାଣିରେ ଯିବ ମର ।

---

## ବ୍ୟଥା ନିବେଦନ

ତୁମେ,କେସନେ ଜାଣିବ ଗୋ ଅସୀମ ପ୍ରୀତି ମୋର,
ଭଷାର ଏ ସେନେହ ଅଶା ପିଆସା ଘୋର?
ତୁମେ ତ ରହ କେଉଁ ଦୂରେ ଗୋ,
ସନ୍ଧ୍ୟା! ସ୍ୱପ୍ନ ସେ ପୁରେ ଗୋ ।
ମୁଁ ଗୋ ତୁମର ପଥ ଗୁହିଁ ଅକୁଲେ ଯାଏ ଗାଇ
ଶୟନେ ଜାଗରଣେ ଶାନ୍ତି ମିଳେ କାହିଁ ?
ନୀରବେ ମୋ ମରମେ ମରେ ଗୋ;
ତୁମ ସେନେହ ପ୍ରୀତି ଭରେ ଗୋ ।
ମରମ ତଳ କଥା କେହି ତ ଜାଣେ ନାହିଁ
ଉଦାସେ ପୁଛଇ କେ 'ମଳିନ କାହିଁ ପାଇଁ ?'
ଅକୁଳ ଜୋଛନାଟି ବାଦଲ ତଳେ ଖେଳେ,
ଗୋଲପ ପ୍ରାଣକଥା ସଢ଼େ ପବନ ମେଳେ,

କେହି ତ ନ ଜାଣଇ ଥରେ ଗୋ,
ଗୋପନ ପ୍ରୀତି ପ୍ରାଣେ ମରେ ଗୋ ।

ତୁମେ ଏ ପାଶେ ଗଲେ ପରାଣ ପ୍ରିୟ ଶର
ଗଭୀର ସରମରେ ତଳକୁ କରେଁ ଶିର ।
ଅବର ଦାଏ ସବୁ ବ୍ୟଥା ଗୋ,
ବିରହ ପ୍ରୀତି ମାଦକତା ଗୋ ।

ଏ ପଥେ ଗଲେ ତୁମେ ମଳୟ ବହେ ପ୍ରାଣେ,
ତୁମର ଦେହ ଗନ୍ଧ ଭାସଇ ଶତଗାନେ,
ସନ୍ଧ୍ୟା ହସେ ଖଳ ଖଳ ଗୋ
ଉଲ୍ଲସଇ ହୃଦତଳ ଗୋ,

ତୁମର ପ୍ରୀତିଲଭ ତଳେ ତ ଅଶା ନାହିଁ
ନୀଳ ମୁଁ ଯାଏ ଗାଇ ଗୋପନେ ରହେ ରହିଁ
ସବୁଠି ଦେଖେ ତୁମ ଛା
ତୁମରଲାଗି ମୁହିଁ କାବ ଟ

ବତାସ ଯାଉ ବହି ବେଦନା ଯାଉ ଦହି,
ପରାଣ ହେଉ କ୍ଷତ ସବୁ ମୁଁ ଯିବି ସହି,
ମରଣ ଆଗମନେ ଛଳ ଛଳ ନୟନେ,
ସୁନୀଳ ଆକାଶକୁ ଚାହିଁବି ଥିର ମନେ,
ଶେଷ ଗୀତଟି ମୋର ଗାଇବି ଶୁଭକ୍ଷଣେ
ତୁମେ ତ ଚିରଦିନ ମୋର ଗୋ
ଛିଣ୍ଡି କି ପାରେ ପ୍ରୀତି ଡୋର ଗୋ ?



[୧୯୪୨]

# ବର୍ଷା ସଙ୍ଗୀତ

ଆକାଶେ ମାତିଛି ବଜ୍ର ବାଦଲ
ସାଇଁ ସାଇଁ ବହେ ପବନ;
ପୁଲକ ଉଠଇ ଚପଳା ଅଙ୍ଗେ
କି ଅବା ନବୀନ ଯୌବନ
ପ୍ରଳୟର ଏକ ଉନ୍ମାଦ ଡାକ
ଏକ ମୂର୍ଚ୍ଛନା ଥରେ ଆଖିପାଟ,
କେଉଁ ମନ୍ତ୍ରଅଳ ଡାକେ ଅସ ଅଜ୍ଞ
ମୁକ୍ତ ବିଶ୍ୱ ଅଙ୍ଗନ !
ସାଇଁ ସାଇଁ ବହେ ପବନ ।

ବାହାରେ ଭିତରେ ଯୌବନ ଖେଳ
ବରଷାର ଧାର ପ୍ରାନ୍ତରେ,—
ଛୁଟଇ ଯେସନେ ଅନନ୍ତ ଯୁବା
ନବ ଯୌବନ ମନ୍ତ୍ରରେ ।
(ମୋର) ଅବଶ ପରାଣି ନୁହେଁ ସମ୍ଭାଳ
ଉନ୍ମାଦ ଶିଖା କିଏ ଗଲା ଜାଳି !
ବରଷା ସହିତେ ଅନ୍ତର ଖେଳେ
ମୁକ୍ତ ସକଳ ବନ୍ଧନ !
ସାଇଁ ସାଇଁ ବହେ ପବନ ।

[୧୯୨୩]



# ପ୍ରଣୟୀର ସ୍ୱପ୍ନ

ଯହିଁ, ସନ୍ଧ୍ୟା ସ୍ନିଗ୍ଧ ଅଳସ ନୟନେ ସ୍ତୁହେଁ,
ଯହିଁ, ମଳୟ ଅସୀମ ପ୍ରଣୟର ଗୀତ ଗାଏ,
ଯହିଁ, ନିତ୍ୟ ନବୀନ ଯୌବନ ବୀଣା ବାଏ,
ସେ ଦେଶେ ଯିବ ମୁଁ ସେ ଦେଶେ ଯିବ ।

ଯହିଁ, ଗନ୍ଧ-ବକୁଳ ସମୀରଣେ ପଡ଼େ ଝରି
ଯହିଁ, ହାସ୍ନାହେନାର ନିଃଶ୍ୱାସ ଉଠେ ଭରି
ଯହିଁ, ନିତ୍ୟ ମୁକ୍ତ ନବୀନ ପ୍ରଣୟତନ୍ତ୍ରୀ,
ସେ ଦେଶେ ଯିବ ମୁଁ ସେ ଦେଶେ ଯିବ ।

ଯହିଁ, ସନ୍ଧ୍ୟା ପବନେ ଗୋଲାପ ପଡ଼େ ନା ତୁଟି,
ଯହିଁ, ସୌରଭାକୁଳ ମାଳତୀ ମଲ୍ଲୀ ଫୁଟି,
ଯହିଁ, ନିତ୍ୟ ପ୍ରଣୟ ଷଟ୍‌ପଦ କରେ ଲୁଟି,
ସେ ଦେଶେ ଯିବ ମୁଁ ସେ ଦେଶେ ଯିବ ।

ଯହିଁ, ଅକାଳରେ ହେଲେ ବହେ ନାହିଁ ଥରେ ଶୀତ,
ଯହିଁ, ପ୍ରଣୟୀ କଣ୍ଠେ ପ୍ରଣୟିନୀ ଶୁଣେ ଗୀତ,
ଯହିଁ, ନ ଫେରଇ ଅଖି କ୍ଳାନ୍ତ ନୁହଇ ଚିତ,
ସେ ଦେଶେ ଯିବ ମୁଁ ସେ ଦେଶେ ଯିବ ।

ଯହିଁ, ଶ୍ୟାମ ପ୍ରାନ୍ତରେ ସ୍ତୁହିଁ ରହେ ଘାସ ଫୁଲ,
ଯହିଁ, ପ୍ରଣୟ କଣ୍ଠେ ଢୁଳୁଲେ ତଟିନୀକୂଳ,
ଯହିଁ, ନିର୍ଜ୍ଜନ ବନେ ନିର୍ଝର ବ୍ୟଥା ଭୁଲି,
ସେ ଦେଶେ ଯିବ ମୁଁ ସେ ଦେଶେ ଯିବ ।

ଯହିଁ, ସମୀରଣ ଯାଏ ଟଣ୍ଡେ ପରାଗ ବୋଳି
ଯହିଁ, ପ୍ରଣୟୀ ସହିତେ ପ୍ରଣୟିନୀ ଖେଳେ ଦୋଳି,
ଯହିଁ, ପାଦପ ଲତାରେ ଝୁଲଇ କୁସୁମ ଥୋଳି,
ସେ ଦେଶେ ଯିବ ମୁଁ ସେ ଦେଶେ ଯିବ ।

ଯହିଁ, ସନ୍ଧ୍ୟା ଗଗନେ ଝଲଇ ଇନ୍ଦ୍ରଧନୁ,
ଯହିଁ, ଭସିଆସେ ମଧୁ କୋକିଳ କଣ୍ଠ ବନ୍ଧୁ,
ଯହିଁ, କୋମଳ ସ୍ୱରଟି ମଉଳି ନ ପଡ଼େ ମନୁ,
ସେ ଦେଶେ ଯିବ ମୁଁ ସେ ଦେଶେ ଯିବ ।

ଯହିଁ, ସ୍ୱର୍ଗ ମର୍ତ୍ତ୍ୟ ଅସୀମାନନ୍ଦେ ନନ୍ଦନ,
ଯହିଁ, ମୁକ୍ତ ପ୍ରଣୟ ମାନେ ନାହିଁ ବାଧା ବନ୍ଧନ,
ଯହିଁ, କ୍ଳାନ୍ତ ବିଷାଦ ନ ମାନି ଝରଇ ଚୁମ୍ବନ,
ସେ ଦେଶେ ଯିବ ମୁଁ ସେ ଦେଶେ ଯିବ ।

ଯହିଁ, ଗଗନେ ପବନେ ଅସୀମ ସ୍ୱପ୍ନ ଭରା,
ଯହିଁ, ନାହିଁ କୋଳାହଳ ବ୍ୟଙ୍ଗ ତୀବ୍ର ଖରା,
ଯହିଁ, ମୁଗ୍ଧ ନୟନେ ପ୍ରଣୟ ଅମୃତ ହରା,
ଯହିଁ, ମଦରଗନ୍ଧେ ଯୌବନ ଦିଏ ଧରା,
ସେ ଦେଶେ ଯିବ ମୁଁ ସେ ଦେଶେ ଯିବ ।

ଅସ ପ୍ରଣୟିନୀ ସେ ଦେଶେ ଯିବା ଗୋ ଅସ,
ତୁମ ପାଶେ ତଳି ପିଇବ ବକୁଳ ବାସ,
ଦେଖିବା ସ୍ୱପ୍ନ ପ୍ରଣୟ ଅମର ହାସ,
ଭୁଲିବା ମରଣ ବେଦନା ବିକଳ ତ୍ରାସ !

[୧୯୬୪]



# ବନ୍ଦୀ-ସ୍ମୃତି

ଲହି ଲହି କାହିଁ କୋକିଳ ଉଠଇ ଗାଇ,
ମଳୟ ପବନେ ଆଜ ସେ ହେଲଣି ବାଇ,
ତା ପଛେ ମାତଇ ଛଇଳ କଜ୍ଜଳପାତ,
ମନେ ପଡ଼େ ମୋର କେଉଁ ସ୍ୱପ୍ନର ବାତ !

କେଉଁ ସ୍ୱପ୍ନର ସନ୍ଧ୍ୟା ମୋ ଅବସାନ,
ସେ ପ୍ରଭାତ ଲଗି କାନ୍ଦ ଉଠେ ମୋ ପ୍ରାଣ,
ପ୍ରଣୟୀ ଯେସନେ ପ୍ରଣୟ-ସ୍ୱର୍ଣ୍ଣ ଲଗି
ଜନନୀ ଯେସନେ ରହେ ଶିଶୁ ଲଗି ଜାଗି ।

ମନେ ପଡ଼େ କେଉଁ ଭୀଷଣ କାନନ ଭୂଇଁ
ବଙ୍କି ସେ ପଥେ ଏକା ବୁଲୁଥାଏ ମୁହିଁ,
ଲତା ନିକୁଞ୍ଜେ ମଳୟ ପହଁର ଯାଏ,
'କୁହୁ କୁହୁ କୁହୁ' ଅଥୟ କୋକିଳ ଗାଏ ।

ନିରଜନ ବନେ ରଚେ ମୋ ସ୍ୱପନ ସୃଷ୍ଟି,
ଭାସମାନ ପକ୍ଷୀ ପରାଗ ଗନ୍ଧେ ବୋଳି,
ସରଳ ସେନେହେ ଲାଖି ରହେ ମୋର ଦୃଷ୍ଟି
(କେତେ) ଶରଧାରେ ଯାଚେଁ କାନନ କୁସୁମ ତୋଳି ।

ସ୍ୱାଧୀନ ସ୍ୱପ୍ନ ସ୍ୱାଧୀନ ପ୍ରଣୟ ମୋର
ଜାଣି ନାହିଁ ଆଜ କିଏ ଗୋ ଉଡାଇଁ ଗଲା
ଛିନ୍ନ କଲା କେ ସ୍ୱର୍ଣ୍ଣ ସେ ସ୍ୱପ୍ନ ଡୋର
କେଉଁ ସଙ୍ଗୀତ ଉଚ୍ଚାଟ କଲା ମଲା !



# ପ୍ରୀତି-ଅନୁଭୂତି

ତୁମେ ମୋର ଚିର ଜୀବନ ତରୁଣ ସ୍ୱପନ,
ତୁମେ ମୋର ନବ କାବ୍ୟ ଅରୁଣ ବସନ,
ତୁମେ ମୋର ପ୍ରିୟ ବକୁଳ ମଦିରା-ଗନ୍ଧ,
ତୁମେ ମୋର ନବ ଗୋଲାପ-କରୁଣାନନ୍ଦ ।

ତୁମେ ମୋ ନିତ୍ୟ କୋକିଳ କଣ୍ଠସ୍ୱର,
ତୁମେ ମୋ ସତ୍ୟ ମନୋହର ମଳୟର,
ତୁମେ ମୋ ସନ୍ଧ୍ୟା ମୁଗ୍ଧ ଅଳସ ନୟନ,
ତୁମେ ମୋ ଚିତ୍ତ କେତେମତେ କର ହରଣ ।

ତୁମେ ମୋର ନବ ନୀରଦ ଅଙ୍ଗେ ଚପଳା,
ତୁମେ, ମଳୟ-ଅଙ୍ଗ-ମୁଗ୍ଧ-ବକୁଳ-ମେଖଳା,

ତୁମେ, ଲହରୀ ଛନ୍ଦ
ନିତ୍ୟାନନ୍ଦ,
ମୁଁ ଗୋ, ତୁମରି ସେତେନେହେ
ମୁଗ୍ଧ ଅନ୍ଧ,

ତୁମେ, ନବ-ଯଉବନ-ମୁକ୍ତା-ମାଣିକ-ମୋତି
ତୁମେ, କିରଣ ବର୍ଣ୍ଣେ ଦିବ୍ୟ ଅମର ଜ୍ୟୋତି !
ତୁମେ ତୃଷ୍ଣା ମରମେ ସ୍ୱର୍ଗ ଗଙ୍ଗାଧାରା,
ତୁମେ ମୋର ଦୂର ନୀଳ ଗଗନର ତାରା !

ତୁମେ, ଛଳ ଛଳ ଜୁହିଁ ମାଳତୀ ଗନ୍ଧ-ବନେ,
ପୁଣି, ଜ୍ୟୋସ୍ନା-ସପନ-ଅମର-ସିଂହାସନେ,

ତୁମେ, କେତେ ରୂପେ ମୋର ଅନ୍ତରେ ଯାଅ ଗାଇ,
ମୁଁ ଗୋ, ମୁଗ୍ଧ ପର୍‌ଣେ ଗଗନକୁ ରହେ ଚାହିଁ !
ନାହିଁ ଅବସାଦ,
ନାହିଁ ପରମାଦ,
ସଂଶୟ, ଭୟ,
ଦ୍ୱନ୍ଦ୍ୱ ବିବାଦ,
ଅସୀମ ପ୍ରଣୟେ ଚିତ୍ତ ବୃତ୍ତି ଲୟ !
ତ୍ୟାଗ ମନ୍ତ୍ରେ କରେଁ ମୁଁ ଗୋ ସବୁ ଜୟ !
ଅସ ନାହିଁ ପଛେ ଥରେ ହେଲେ ମୋର ବାସେ,
ଅସ ନାହିଁ କେବେ ମୋ ସୁଖ-ସ୍ୱପ୍ନ ନାଶେ ।

ନୀରସ ମର୍ତ୍ତ୍ୟ ଦିଅ ନାହିଁ କେବେ ଧରା,
ମୁଁ ଗୋ, ଦୂରୁ ଥରେ ଚାହିଁ ହୋଇବି ଅମୃହରା ।
କଳ୍ପନାତୀତ ସୁଦୂର ସ୍ୱପ୍ନ ସ୍ୱର୍ଗ,
ଅଗୋ, ତାକୁ ଯାଉ ନିତି କରୁଣି ଛନ୍ଦ ହର୍ଷ !
ମୁଁ ଗୋ, ନୀରବ ଯେନେହେ ତାକୁ ଦେଉଛି ଏ ମତି,
ନୀରବ ଲେଖକେ ପୀରତିର ପରିଣତି !

---

## ବ୍ୟଥା-ମାଧୁରୀ

ମଳୟ ଅଜି ପ୍ରାଣେ                    ଦିଅଇ କେତେ ବ୍ୟଥା
ମାତର ତୁମ ବ୍ୟଥା ମଧୁର,
ଶତ ମଳୟକୁ ଟପେ                    ଏ ପଥେ ଲେ ଚାଲି !
ଚାହିଁଛି ମୁଁ ବିରହବିଧୁର ।

ବକୁଳ ତରୁ ଶିର୍ ପଡ଼ିଲ ଝରି,
ବ୍ରଷମ ଲଜ୍ଜେ ମୁଁ ଗୋ ଗଲିଟି ସରି ।
ସପନ ପରି ଅସି ସପନେ ଗଲ ଚଳି
ଗଭୀର ଚେତ୍ନର ଭରି ବ୍ୟକତ
ମଧୁର ରୂପ ଗୋଟି ଅସୀମ ଅନୁରାଗେ
ମନୁ କି କରିପାରେଁ ତ୍ୟକତ ?
ସୁନ୍ଦର ସତ୍ୟ ପ୍ରୀତି ପାଇଛୁ ଅଜି !
ଅସୀମ ଅଶା ସ୍ୱର ଉଠଇ ବାଜି !
ମଧୁର ଏଇ ଧରା ଭ୍ରମର ଲାଗି ଏରା
ମଧୁର ନିମେଷର ମିଳନ
ମଧୁର ଏଇ ପଥେ ନାତ ଗୋ ନରେଣିବା
ଅସୀମ କ୍ଷଣିକର ସପନ ।
ଯାଅ ଯାଇଛ ପୁଣି ଅସିବ କେତେ ମତେ
ଅସୀମ ପରାଣର ଭରସା
ନୀରସ ଏ ହୃଦୟେ ମଳୟ-ଗଗନରୁ
ବକୁଳ ଗନ୍ଧେ ଟୋ ବରଷା !
ଯାଇଛ ଯାଅ କିଛୁ ଭାବନା ନାହିଁ;
ପୂର୍ଣ୍ଣ ଗୀତ ମୋର ଯିବ ଗୋ ଗାଇ ।



# ମ୍ଲାନ-ଫୁଲ

ଫୁଟିବ ନାହିଁ ଥରେ ମଉଳି ପଡ଼େ
ମଳୟ ଉପବନ ଫୁଲଟି,
ସକଳ ତା ସୁଷମା ସକଳ ସଉରଭ
ଧୂଳିରେ ଆଜି ହୁଏ ଦଳିଟି ।
ଜୀବନେ ଆଉ କିଛୁ ନ ଦେବ ନାହିଁ
ଇତର ଲୋକପରି ଯାଅ ଗୋ ଭୁଲି ।
ସେତିକି ଏ ଜୀବନ ପାଥେୟ ତାର
ସେତିକି ଜୀବନର ଧନ ଗୋ,
ଅସୀମ ଅନ୍ଧାରେ ହତାଶ ହାହାକାରେ
ଅମର ଆଲୋକର କ୍ଷଣ ଗୋ ।
ସେତିକି ପ୍ରତିଦାନ ପାରିବ ନାହିଁ ?
ବିଫଳେ ବ୍ୟଥା ତାର ଯାଉଛି ଗାଇ ।
କାହିଁକି ଦେଖାଇଲ ସ୍ୱପନ ଲୋକ ?
ଏତେ ସେନେହ ଏତେ ପୀରତି ?
କାହିଁକି ନିଠୁର ଦେହ କୁସୁମ ସୁକୋମଳ
ମରଣ ଗୋଟି ଦେଲ କରତ ?
ପ୍ରଣୟ ସୁଖ ଆଶା ତରଳ ମଧୁଭାଷା
କାହିଁକି ଢାଳିଗଲ ଯତନେ ?
କାହିଁକି, 'ଆସ ଆସ ଡାକଇ ମଧୁମାସ'
ସୋହାଗେ କହିଗଲ ଗୋପନେ ?
କାହିଁକି ସେହି ମନ୍ଦ ମଧୁର ହାସ ?
ସକଳ ପ୍ରୀତି ଆଜି ଦଅଇ ତ୍ରାସ

ତୁମର ପୂଜାରେ ଯେ ଅରପି ଥିଲା ମନ
ତରୁଣ ଦେହ ଯଉବନ ଗୋ,
ପୁଲକେ ଯେଉଁ ଥରେ ବରଗେ ହତାଦରେ
କହିଲ "ନାହିଁ ପ୍ରୟୋଜନ" ଗୋ ।
କହିଲ ନାହିଁ ପଦେ ମଧୁର କଥା,
ଗଭୀର ବ୍ୟଥାରେ ସେ ନୋଇଁଲା ମଥା ।
ଆଜି ସେ ଅନାଦୃତ ଏକାକୀ ବନ୍ଧୁ ହେ
କାହିଁକି ଯଣେ ବହେ ମଳୟ,
କାହିଁକି କଳ୍ପନା ଛଳନା ହାହାକାରେ
ଭରମେ ତୋଳେ ସ୍ବର ନିଳୟ ?
ମୁରଲୀ ଯଣେ କମା ଯାଏ ଗୋ ଡାକି
କାହିଁକି ମନେ ପ୍ରାଣ ପ୍ରଣୟ-ଭୁଖି ?
ଭାଙ୍ଗିଗଲଣି ତାର ସକଳ ଗଉରବ
ଆଜି ସେ ଦୀନ ହୀନ ପ୍ରାଣୀଟି,
ତେବେ ବି ଷମ ଆଶା ଆକୁଳ କରେ
ପରାଣ ପାରୁନାହିଁ ଜାଣିଟି ।
ମର୍ତ୍ତ୍ୟେ କାହିଁ ମିଶି ପାରେ ସେ ନାହିଁ
ସକଳ ପୂର୍ଣ୍ଣ ତା' ଗଲେ ଗୋ ଛୁହିଁ ।
ତୁମେ, କେସନେ ଭୁଲିଗଲ ସରଳ ପ୍ରୀତି
ଗଭୀର ଜୀବନର ଦାନ ଗୋ ।
ଲକ୍ଷ ହତାଦରେ କାହିଁ ତ ହେଲେ ଥରେ
ଭୁଲେନା ତା ମଉଳା ପ୍ରାଣ ଗୋ
ଜୀବନେ ଲୋଡ଼ା ତାର କିଛି ତ ନାହିଁ,
ଅଦୂରୁଁ ଥରେ ଖାଲି ଯାଅ ନା ଛୁହିଁ ।



# ଗୋପ ବାଳକର ପ୍ରୀତି ଅନୁଭୂତି

ଦେଖିଲେ ଥରେ ତାର        କଜଳ କଳା ଆଖି,
ପଥିକ ପ୍ରୀତି ଫାନ୍ଦେ        ପରାଣ ଯିବ ଲଖି ।
କଳା ସେ କଳା ହେଉ        ଶୋଚନା କରୁ ନାହିଁ
ମୁଁ ଗୋ ତାହାରପାଇଁ        ସେ ତ ମୋହରପାଇଁ ।

ଦେଖଇଁ ନିତି ତାକୁ        କୁଟୀର ପଥ ପାଖେ ·
ମତ୍ତ ମରାଳ ପରି        ଚଟଳ କଳସୀ କାଖେ
ଦେଖିଲେ ମୋତେ ସେ ଗୋ ଲାଜରେ ମରେ ଦୂରୁ
ତଳକୁ ପୋତି ମଥା        ଫେରାଇ ନିଏ ଭୂରୁ ।

ଲଳିତ ଯଉବନ        ତା ଦେହୁଁ ପଡ଼େ ଫାଟି,
ଶ୍ୟାମଳ ଶାଢ଼ୀ ଖଣ୍ଡି        ଯତନେ ପିନ୍ଧେ ଆଣ୍ଟି ।
ଚିଲିକା ପ୍ରାନ୍ତରେ ମୁଁ        ବଇଁଶୀ ଦେଲେ ବାଇ
ସକଳ ଲାଜ ତେଜି        ମୋ ପାଶେ ଆସେ ଧାଇଁ ।
ନିବିଡ଼ ଚୁମ୍ବନେ ମୁଁ        ହୃଦୟେ ଧରେ ଟାଣି,
ନୀରବ ପ୍ରୀତି ଅନ୍ତେ        ବିରହ ଦିଏ ହାଣି ।

[୧୯୨୫]

---

# ଗୋପ ବାଳାର ଅଭିଯୋଗ

ତୁମକୁ ମୋହ ରାଣ        ଛାଡ଼ ପଣନ୍ତ କାନି,
ଜାଗିବେ ପୁରନାରୀ        ପାରିବେ ସବୁ ଜାଣି ।

ଛୁ, ଛୁ, ତୁମର ସାତ        ନ ଗଲା କାଳେ କାଳେ,
ମୋ ପୋଡ଼ା କରମକୁ        ପଡ଼େଁ ମୁଁ ତୁମ ପାଳେ ।

ଦେଖିଲ ଗିରି ଶିଖର    ମଳିନ ଶଶଧର,
ଗଲେଣି ବୁଡ଼ି, ଆଜି    ନ କର ହରବର ।

ପୂରୁବ ଦିଗୁଁ ପୁଣି    ସିନ୍ଦୁର ଅସେ ଫାଟି
ଶୁଭଇ ତରୁ ମେଳୁ.    ଖଞ୍ଜନ କାକ ପାଟି ।

ଚଲିଲା କୋଉଁ ଧୀର—    ଶୀତଳ-ସମୀରଣ
ଉଠି **ଅସଇ** ହୁଅ    କମ୍ପଇ ଘନ ଘନ ।

ଛି, ଛି, ଏ ଚୁମ୍ବନ !    ମିନତି, ଥାଉ ଥାଉ !
କପୋଳ ଅରୁଣିମା    ନିଭିବ ନାହିଁ ଅଉ !

ମଳିନ କରି ଗଣ୍ଡ    ଅଧର କେଶ ବେଶ,
ଚେତିବେ ଭୂପତି ନାହିଁ    ତୁହିଁଇ ପ୍ରୀତି ଶେଷ ।

——

[୧୯୨୫]

## କଳ୍ପନାମୟୀ

ଚିର କଳ୍ପନାମୟି !
ତୁମ, ଉଜ୍ଜ୍ୱଳ ରୂପ—    ଅରୁଣ-ଆଲୋକେ
ହସିଥିଲ ମୋର ମହୀ ।
ଉଜ୍ଜ୍ୱଳ ଉଷା ତରୁଣ ଜୀବନେ,
ପୁଣ୍ୟ-ତାରକା ଚପଳ ସ୍ୱପନେ,
ତୁମରି ପରଶେ    ଜୀବନର ଗାଥା
ଛନ୍ଦେ ଯାଇଛୁ କହି
ଚିର କଳ୍ପନାମୟି ! ୧ ।

ରୂପର ପିପାସା ଜଗାଇଲ ପ୍ରାଣେ
ବହାଇଲ ଲୋତକଧାରା !
ସ୍ୱପ୍ନମୟି ଗୋ ଚିର ସୁନ୍ଦର,
ଧନ୍ୟ କଲ ଏ ମରୁ ଅନ୍ତର,
ବୋଲାଦେଲ କାହୁଁ ମଧୁ ମଳୟର
ନବ ମଲ୍ଲିକା ବାସ,
ଦେଖିଛୁ ମନ୍ଦ ହାସ,
ଭୁଲିଛୁ ଜୀବନେ ଶତ ବିଫଳତା!
ଭୁଲିଛୁ ଗୋ କ୍ଷତ ପ୍ରାଯ । ୨ ।

ଅଟଗୋ, ଉତ୍ସବମୟି !
ମୋ ତରୁଣ ମନ ରମ୍ୟ କାନନେ
ତୁମେ ଗୋ ସର୍ବଜୟୀ ।
ରୂପର ଅମର ସେ ପୀୟୂଷ ମାଖି,
ଅପଲକ ମୋର ମୁଗ୍ଧ ଏ ଆଖି,
ଧନ୍ୟ ଜୀବନ ଧନ୍ୟ ସ୍ୱପନ—
ଧନ୍ୟ କବିତା କବି,
ତୁମ ରୂପ ଛବି ଲଭି,
ମନେ ନାହିଁ ମୋର ଦୁଃଖର ଦବା
କେମନେ ଯାଇଛୁ ବହି,
ଅଗୋ ଉତ୍ସବମୟି ! ୩ ।

ଅଗୋ କୌତୁକମୟି !
ହେ ଚିର ଚପଳ ଚିର ଚଞ୍ଚଳେ
କବି ପ୍ରାଣ ଯାଅ ଦହି ।
ସନ୍ଧ୍ୟାର ମେଘ ! ଶୀରତର-ହସ !
ମନ୍ଦ ସେ ହାସ ସୁମଧୁର ପ୍ରାସ,

ସୁଦୂର ଗଗନ ଇନ୍ଦ୍ରଧନୁ ଗୋ
ପଡ଼ ନାହିଁ କେବେ ଧରା,
ତୁମ ଲାଗି କବି ପରା—
ଖୋଜଇ ଅକୁଳେ ପ୍ରାନ୍ତର ବନ
କ୍ଷୁବ୍ଧ ଅନ୍ତ-ହରା !
ଅକୁଳ ଜୀବନ ଶ୍ୟାମଳ କ୍ଷେତ୍ରେ
ଥରେ ଗୋ ମଳୟ ବନ୍ଧୁ,
ଲଭ କୌତୁକମୟି ! । ୪ ।

ହେ ଚିର ପୁଣ୍ୟମୟି !
କବି ଯୌବନେ ପୌଷ ପବନ
ଆଜି ଖରେ ଯାଏ ବହି !
ଝରେ କିଶଲୟ, ସୁପ୍ତଛନ୍ଦ,
ଶୂନ୍ୟ କାନନେ କୁସୁମ ଗନ୍ଧ,
ଶୂନ୍ୟତା ଚିର— ମନ୍ଦିରେ ଆଜି
ବେଦନା ଅଶ୍ରୁ ପୂଜା;
ରୂପ-ରହସ୍ୟ ପଡ଼େ ନାହିଁ ଭଲେ ବୁଝା !
ସବୁ ଅସ୍ଥିର, ସବୁ ନଶ୍ୱର,
ସକଳ ନମଲେ ଗୋ ତୁମେ ସୁନ୍ଦର,
ସ୍ୱପ୍ନ ଜୀବନ ଅରୂପ ପଦ୍ମ !
ଅତୀତର କଥା ଭୁଲି,
ଅଣିଛୁ ଅର୍ଘ୍ୟଥାଳି,
ସ୍ୱପ୍ନଲୋକର ଅଶ୍ରୁ ହାସ୍ୟ
କହ ନେବ ଅବା ନାହିଁ ?
ଅଗୋ କଳ୍ପନାମୟି !

# ଅରୂପ-କୁସୁମ

ଆଜ  ଇନ୍ଦ୍ରଧନୁର ସପ୍ତରଙ୍ଗେ
ତୁମର ରୂପ ଝଲିଲା
ଅରୂପ କୁସୁମ ତୋଳିବାକୁ
ମନ ବଳିଲା ।
ଝରେ ଝର ଝର ବର୍ଷା ବିନ୍ଦୁ,
ଉଛୁଳେ ପୀରତି କନକ ସିନ୍ଧୁ,
ଆଜ  ନାହିଁ ମୋର ଭାଷା ଟେକସନେ ସଜନି
କହିବ ପୀରତି କଳିଲା ।
ଅସୀମ ପିପାସା !.ଆକାଶ କୁସୁମ
ତୋଳିବାକୁ ମନ ବଳିଲା ।

ତୁମର ବିରହେ ସୃଷ୍ଟି ଆଲୋକେ
ଅମୃତ ଆଶା ଖେଳେ !
ଅଟୋ, ମଧୁର ବର୍ଷା ମେଳେ !
ମୁଁ ଗୋ, ବନବିହଙ୍ଗ  ଏକା ଏ କୁଟୀରେ
ଧରେ ତାନ ଅବହେଳେ !
ସେ ଗୋ, ମେଘ ମହ୍ଲାର ଅବା ଜାଣେ ନାହିଁ,
ତୁମର ସେ ନାମ ବହିଲେ ଗାଇ,
ନିମୀଳିତ ଆଖି  ଦେଖଇଁ ଗଗନେ—
ଭୁବନ ଧୈର୍ଯ୍ୟ ଟଳିଲା,
ଅପରୂପ ରୂପ ପାଦପ
ଲତାରେ ଝଲିଲା !



ଜାୟ—

# ଉଷାଲୋକେ

ଅଳସ ଉଷାର ଆଲୋକେ ଝଲକି
କାହାର କନକ ଅଙ୍ଗ;
କ୍ଳାନ୍ତ ପରାଣ ସେ ରୂପେ
ରହିଲା ଲାଗି !

ଆପେ ଆପେ ଅଙ୍ଗ ସବୁ ବନ୍ଧନ,
ସକଳ ଦୈନ୍ୟ ଗ୍ଳାନି କ୍ରନ୍ଦନ,
ଗଳିଗଲା ଧୀରେ ଯେସନ ଯାହାର
କି ପୀରତି ସୁଧା ଭୃଙ୍ଗ !
ତାହାର କନକ ଅଙ୍ଗ ।

ସେତ, କ୍ଷଣିକର ଆଶା, ସେନେହ, ପୀରତି,
କ୍ଷଣିକ ସ୍ୱପନ ମାୟା,
ମୋର, ବିକଳ ପରାଣ ଖୋଜି ବୁଲେ ସେହି
ଆକୁଳ ନୟନ ଛାୟା !

ସେହି, ତରୁଣୀ ପରାଣ କରିବାକୁ ପାନ
ଦିବା ନିଶି ତୋଳେ ମୋ କରୁଣ ଗାନ,
(ମୁଁ ଗୋ) ମୂର୍ଣ୍ଣ କରିବି ସେ ଆଲୋକ ତେଜେ
ଜୀବନେ ରହେ ଯା ବାକି,
ରୂପ ପାରାବାରେ
ସେ ପୀରତି ସୁଧା ଭୃଙ୍ଗ ।



# ରୂପଲହରୀ

ଭୁବନେ ଖେଳଇ ରୂପର ଲହରୀ
 ଗଗନୁ ଝରଇ ଅରୂପ ମଧୁ;
ସବୁ କଥା ଭୁଲି ଆସ ଏ ବିଜନେ
 ପିଇବା ବସି ଗୋ ଜୀବନ ବନ୍ଧୁ ।

ଯାଏ ଯୌବନ କେତେ କଥା ଭୁଲି,
ପୂରେ ନାହିଁ ଦିନେ ରିକ୍ତ ଏ ଥାଳି,
"ସଫଳ କର ତୋ ଜନମ !" ଡାକଇ
 ନଦୀ ଆରପାରୁ ଚକୋର ବଧୂ;
 ସନ୍ଧ୍ୟାରୁ ଝରେ ଅରୂପ ମଧୁ ।

ଅସୀମ ଏ ରୂପ ସତ୍ୟ ନିତ୍ୟ,
 ମିଥ୍ୟା ସକଳ ସପନ;
ଜୀବନର ବ୍ୟଥା କ୍ରନ୍ଦନ ଭୁଲି
 ପୂଜିବା କରିବା ବରଣ ।

କାହା ରୂପେ କହ ବିଭୋର ସନ୍ଧ୍ୟା,
ବକୁଳ ମଲ୍ଲୀ ରଜନୀଗନ୍ଧା ?
କାହା ରୂପେ ବାଇ ଆଜି ଏ କୋକିଳ
 ଗାଇଯାଏ ଗୀତ ଅଶାର ଛନ୍ଦ,
ଭୁବନେ ଖେଳଇ ରୂପର ଲହରୀ
 ଗଗନୁ ଝରଇ ଅରୂପ ମଧୁ ।



# ନବ ବର୍ଷାନୁଭୂତି

ନବୀନ ବରଷାରେ ତୁମର ଅନୁଭବ ମଧୁର,
ମଧୁର ପୁଣି ସ୍ୱରସୋହାଗୀ ଏ ଗୃହକ ବଧୂର ।
ମଧୁର ମନ ମତେ,
ଏ ବାତାୟନ-ପଥେ—
ଗୁହଁବା ଦୂରପଥ ବଧୂର,
ତୁମର ଅନୁଭବ ମଧୁର !

ବରଷା ଝର ଝର ଘନ ତମିର ନଭୁଁ ଝରଇ,
କେତେ ବାସନା ଜାଗି ତରୁଣ ମରମରେ ମରଇ !
ସମୀର ଅବିରଳ,
ହସଇ ଖଳ ଖଳ,
ନବୀନ ପ୍ରୀତିସମ ଥରଇ !
ବାସନା ମରମରେ ମରଇ ।

ପୀଡ଼ିତ-ବେଦନା-ପ୍ରାଣ ବରଷା କୋଳେ ଏକ କରି ଗୋ,
କୁଟୀରେ ବସି ବସି ବେଦନା ନୟନେ ନୀର ଭରି ଗୋ,
ବରଷା ଅନୁଭବ,
କବିତା ନବ ନବ,
ବିରଚି ଗଲେ ସହଚର ଗୋ,
ଭାଳେଁ ସାଜନ୍ତୁ ଯନ୍ତ୍ର କରି ଗୋ ।

ସେନେହ-ସିକ୍ତ ନେତ୍ରେ ଦେଖନ୍ତୁ ଚପଳାର ଚଳଣି,
ଅନ୍ଧାର ମେଘ କୋଳେ ଯୁଗଳ ପ୍ରାଣ ଏକ ସଜଣି,

ଭୁଲି ସଂସାର ମାୟା,
ବେଦନା ଦୁଃଖ ଛାୟା,
ତରୁଣୀ-ପୀରତି-ବରଣ-ସୁଖ-ଭୋଗ, ସଜନି !
ବଢ଼ଇ ସମୀରଣେ ଯେସନ ସ୍ୱପ୍ନାବେଶେ ରଜନୀ ।



## ଅଭିସାର-ସ୍ମୃତି

ସେ ତ ଆସିଥିଲା ବନେ ଏସନ ନୀରବ ରାତିରେ,
ମୋର ତରୁଣ ମନଟି ଅଧୀରେ ଉଠିଲା ମାତିରେ ।
ଆସିଲା ଯେସନେ ନିଶାର ସପନ,
ଲୋତକଝୁରିତ କଜଳ ନୟନ,
ସେ ବା, ମଳିନ-ମଲ୍ଲୀ-କୁସୁମ-ବେଦନା
ବହି ଆଣିଥିଲା ଛାତିରେ,
ଆସିଥିଲା ବନେ
ଗଭୀର ନୀରବ ରାତିରେ ॥
କେଉଁ ବିରହୀର ରୁଦ୍ଧ ଦୁଆରେ
ଡାକିଲା ଚକୋର ଉଦାସୀ,
ଅବୋଧ କଜଳପାତି କାହା ପାଖେ
ଘନ ଘନ କଲା ଗୁହାରି ?
ବିକଳ ଜୋଛନା ! ଗାଇଲା ସେ ଗୀତ,
କୋମଳ ହୃଦୟ ହେଲା ତା ଅଧୀର,
କହିଲା…"କିବା ଗୋ ଗାଇବ କି ଥରେ
ବେଦନାର ରାଗ କଣ୍ଠରେ
ଆଜି ଏ ଗଭୀର ରାତିରେ ?"

ଛୁଇଁଲି ବୀଣାର କରୁଣ ତାରଟି
ଝଙ୍କରିଲା ଗଗନ୍ତୁ ଲେଉଟକ,
ବସିଥିଲା ପାଶେ ପାଷାଣୀ ସମୀରେ
ଉଡ଼ୁଥିଲା ତାର ଅଳକ ।
ଥିର ହେଲା ଗୀତ କରି ହାହାକାର !
କଣ୍ଠହାର ସେ ଦେଲା ଉପହାର,
ଶୂନ୍ୟେ ମିଶିଲା ହତାଶ ଯେସନେ
ଚିର କଳ୍ପନା ସାଥିରେ !
ଅସିଥିଲା ପାଶେ
ଗଭୀର ନୀରବ ରାତରେ !



## ନବ ବର୍ଷା ସଙ୍ଗୀତ

ପାଗଳେ କଲଣି ନବୀନ ବର୍ଷା
ତକ୍ତ ମନ !
ମଳୟ ଯେସନେ ଜୋଛନା ରାତେ
କୁସୁମ ବନ !
କ୍ଲାନ୍ତ ନୟନେ ଦୂରେ ନିରେଖିବା
ମିଥ୍ୟା ! ସତ୍ୟ ଖାଲି ଭାସିଯିବା !
କ୍ଷିପ୍ତ ପାଗଳ ସମୀରଣ ଡୁଲେ !
ଡାକୁଛୁ ଦନ,
ଉପେକ୍ଷା କର ବିଷାଦ କ୍ଲାନ୍ତ
ତକ୍ତ ମନ !

ଦଳିତ ପସ୍ୱଣ,                ଯୌବନ ମୋର,
ଗାଅ ରେ ଅଜ !
ଯୌବନ ମୁହିଁ                ନିତ୍ୟ ଅମର !
ଜରପଦେ ମୁଁ କି ପଡ଼ିବ ଭାଜି ?
ଜୀବନ କାହିଁରେ ଜୀବନ କାହିଁ ?
ଏ ଭୁବନ ତଳେ,
ବଜ୍ର ବାଦଲେ,
କହ କାହିଁ ଛଳେ,
ସେ ଅଲୋକ ମିଳେ ?
ଚିର ଅନନ୍ଦ, ଜୀବନ କାହିଁ ?
ଗୁଲ୍ କଳ୍ପନା ପବନ ସହିତେ
ଏଛି ମୃତ ଦେଶେ,
ଜୀବନ ନାହିଁ ଗୋ,
ଜୀବନ ନାହିଁ ।
ଗାଅ ଗୋ ଦଳିତ ବୃଷ ଲଢକା
ନଦୀ ପର୍ବତ ପୁଲକ ପ୍ରାଣେ,
ବର୍ଷା ଅସିଛୁ ବଶ୍ୱେ ଅଜ ରେ
ଅସିଛୁ ଅସାର କବର ଗାନେ ।
ଗୋଲାପ ପ୍ରାଣର ଗୁହିଁରୁ କି ଥରେ
ମଳିନ କ୍ଲାନ୍ତ ନୟନ ମେଲ୍ ?
କବତା ରସିକ ହାସ୍ନା ହେନାର
ଦୁଅରେ ବର୍ଷା କରଇ କେଳି !
ଖେଳେ ସେ ଗଗନେ ପବନେ ଅଜ,
କବତା ଛନ୍ଦେ ପଡ଼ଇ ଭାଜି,

ସ୍ୱପ୍ନ-ବନ୍ଧେର ଧରଣୀ ଗନ୍ଧେ
ରସିନ୍ତୁ ଆଜ !
ବିଶ୍ୱ ମୁକ୍ତ ସକଳ ରନ୍ଧ୍ରେ,
ନବ ଆନନ୍ଦେ,
ଅମରର ଗୀତ
ଉଠଇ ବାଜ !
ସକଳ କଣ୍ଠେ ଜୀବନ ! ଜୀବନ !
ଅସୀମ ପୀରତ କାହିଁ !
ବନ୍ଧନ ସବୁ ମୁକ୍ତ କର ଗୋ
ଦୂରଦେଶେ ଯିବା ଧାଇଁ !
ବିଶ୍ୱ ତନ୍ତ୍ର ଏକଇ ଛନ୍ଦ,
ଏକଇ ପୁଲକ, ପ୍ରୀତ ଆନନ୍ଦ;
ଶୁଣ ଶୁଣ କବି ମୂର୍ଖ, ଅନ୍ଧ !
ଏକଇ ପାଗଳ ଦଣେ,
କାହାର ସ୍ପୃଷ୍ଟ କ୍ଷିପ୍ର ସ୍ମୃତିଟି
ଧାନ୍ଦ ବାଦଲେ ମିଶେ !
ସଙ୍ଗୀତ ମେଳେ ପୀରତର ମେଳେ
କବିତାର ଅନୁଭବ,
ଅରେ ବର୍ଷାର ଉତ୍ସବ !
କୋଳାହଳ ଭେଦ ଉଠଇ ଗଗନେ
ପିପାସା ଆଶାର ରବ ।
ଗାଅ ଗାଅ କବି ଜୀବନର ଗୀତ,
ଆନନ୍ଦ କର କର ଗୋ ଚକିତ,
ପ୍ରେୟସୀ ଅଜ ଢାଳଦିଏ ତାର
ସକଳ ଧନ !
ନବ ବର୍ଷାରେ ନବ-ଆନନ୍ଦ-
ନିମନ୍ତ୍ରଣ !



# ଅନୁଶୋଚନା

ପାଚଶୋରିବି ବୋଲି ବିଫଳ ଜୀବନେ
ଭୁଲଇଁ ଥରକୁ ଥର,
କାହିଁ ପାଇଁ ପୁଣି ଯଉବନେ ବାଜେ
ଗମ୍ଭୀର କରୁଣ ସ୍ୱର !

କାହିଁକି ଗଗନେ ହସଇ ସନ୍ଧ୍ୟା,
ଫୁଟଇ ମଲ୍ଲୀ ରଜନୀଗନ୍ଧା,
ମୁଁ ହେ, ଶୂନ୍ୟତା ମେଳେ ରଚିବି ସ୍ୱପ୍ନ
ନିତ ନିତ ପ୍ରୀତି ଭର !
ପାଶୋରିବି ବୋଲି
ଭୁଲଇଁ ଥରକୁ ଥର ।

ମୁଁ ହେ, ଶ୍ରାବଣ ରଜନୀ ସ୍ପର୍ଶେ ହୃଦୟ
କରିବି ଅଶ୍ରୁସିକ୍ତ,
କ୍ଷିପ୍ର ସମୀରେ ଚପଳା ହାସ୍ୟେ
କହିବି "ରିକ୍ତ ବିକ୍ତ !"
ଜୀବନରେ ଯାହା ନୁହଁଇ ହେବାର
ବିଫଳ ତା ଲଗି ଏତେ ହାହାକାର
ହତାଶର ଗୀତେ ପୂର୍ଣ୍ଣ ଜୀବନ !
ସେ ଅଶାନ୍ତି ମନୋହର !
ପାଶୋରିବି ବୋଲି
ଭୁଲଇଁ ଥରକୁ ଥର !



# ବିଦେଶିନୀ

ଶାନ୍ତ ସନ୍ଧ୍ୟା ହସଇ ମଧୁରେ
ମୁକ୍ତ ନୀରବ ସରଣୀ
ବିଦେଶିନୀ ଆଗୋ ମେଲି ଦିଅ
ତବ ତରଣୀ ।

ଯୌବନର ଏ ମଧୁର ଯାତ୍ରା !
ପରଶଇ ନାହିଁ ବିଷାଦ ମାତ୍ରା !
ମହୀଁ ଅଭିଳାଷ ମୌନେ ଚଳ ଗୋ
ହସଇ ବିଭୋର ଅବନୀ ।
ମେଲି ଦିଅ ତବ ତରଣୀ ।

ନବ ଯୌବନ ଫାଟି ପଡ଼େ ସହ
ଆଜ ଏ ମୁଗ୍ଧ ସନ୍ଧ୍ୟାରେ,
ଯେସନ ଗନ୍ଧ—
ମଲ୍ଲୀ ରଜନୀଗନ୍ଧାରେ !
ମୁଁ ଗୋ, ଭୁଲି ଆପଣାକୁ ପିଏଁ ସେହି ସୁଧା
ନୀରବେ ବସି ଏ ଅନ୍ଧାରେ ।
ହେ ଅପରିଚିତା ! ବିଦେଶିନି
(ତୁମେ) ସ୍ୱପ୍ନ ? ସତ୍ୟ ? ମାୟାବିନୀ ?
(ମୋର) ଅନ୍ତର ମନ ଗାଉଛି ଅଧୀରେ
ତୁମରି ମଧୁର ଆଗମନୀ !
ମନ୍ଦ ମଧୁର ସୁରଧୁନୀ,
ତୁମେ ମାୟାବିନୀ !

ଝଲଇ ମଧୁରେ    କୋମଳ କପୋଳେ
ଅସ୍ତ ରବିର ଚୁମ୍ବନ;
ନିମୀଳିତ ଆଖି    ଅମୃତ ହାସ
ପରାଣି ଅବା କି ସ୍ତମ୍ଭନ !
ସେଇ ହାସେ ପ୍ରାଣ ଭସାଇବାପାଇଁ,
ଅକୂଳ ଗଗନ ସମୀରଣ ବାଇ,
ପକ୍ଷିକଣ୍ଠ ଖେଚର ଉଠେ ଗାଇ
ଅଧୀରେ ଆସଇ ରଜନୀ
ମେଲଦିଅ ତୁମ ତରଣୀ !

ସମୀରେ ଦୋଳଇ    କବରୀ, ଅଙ୍ଗେ
ରହେ ନାହିଁ ନୀଳ ଅଞ୍ଚଳ,
ତରୁଣୀ ରୂପର    ନିମେଷ ସ୍ପର୍ଶେ
ଏକଲା ବିଶ୍ୱ ଚଞ୍ଚଳ !
ଚଞ୍ଚଳ ପ୍ରାଣ    ଯେସନେ ଚପଳା
ଗମ୍ଭୀରେ ଚଳେ    ମାତର ସରଳା
ତରୁଣ କମଳ    ବନେ ମୋ କମଳା
ଚଳ ଗୋ କନକବରଣି !
ମାଡ଼ିଆସେ ଭୀମ ରଜନୀ !

ଗାଇବ ବସି ମୁଁ —    ମୁଗ୍ଧ ସ୍ୱପ୍ନେ ?
ଛନ୍ଦ ହୁଡ଼ଇ ସ୍ଫୁରଣ,
ଅଙ୍କାଉଛ କହୁଁ    ଖସିଛୁ ଚନ୍ଦ୍ର
ଲଭିଛି ଏ ମନ ହରଣ ।
କୋମଳ ଅଙ୍ଗ କୁସୁମ ଗନ୍ଧେ
ମୁଗ୍ଧ ପରାଣି ସ୍ତମ୍ଭିତ ।

କ୍ଷୁବ୍ଧ ମୋ ମନ-ମଳିନ-ଗଗନ
ସ୍ୱଚ୍ଛ ହେଲଣି ରଞ୍ଜିତ ।

ଆଜ ତୁହେଁ ଗୀତ ! ରୂପ ପାରାବାରେ
ଯୌବନ ଅରପଣ ।

ଆଜ ଦେବା ଖାଲି ମୁକ୍ତ ପରାଣେ
ସଞ୍ଚିତ ସବୁ ଧନ !

ନାଅ ନାଅ ତୁମେ ତରୀ ଧୀରେ ବାହି,
ସ୍ୱପ୍ନସାଗରେ ବାହ୍ୟିଲେ ସହି,
ଖସିପଡ଼େ କାହିଁ କୁସୁମଟି ଧୀରେ
ଖୋଜି ଦେବ ଅଗୋ ରମଣି ?
ଚାଲ ଚାଲ ଦୂରେ
ଆସଇ ରୁଦ୍ର ରଜନୀ !



## ଅଶ୍ରୁ ଉପହାର

ନୀତ ନୀତ ବସି ତୁମର ବିରହ
ଅଶ୍ରୁରେ ରଚେଁ ହାର,
ଏତିକି ମୋହର ଜୀବନର ତୁଲେ
ଅନ୍ତିମ ଉପହାର ।

ପାଇ ନାହିଁ ଆଉ କିଛି ତ ଜୀବନେ,
ଭରମିଛୁ କେତେ ତରୁଣ ସପନେ,
ସକଳ ହର୍ଷେ ସୁଖ-ଆନନ୍ଦେ
ବାଜି ଉଠେ ହାହାକାର !
ଅଶ୍ରୁରେ ରଚେଁ ହାର ।

ଏକଇ ଜୀବନ ବିଫଳ ଗୋ ମୋର
ତହିଁ କାର ଲଭ ହାନି ?
ମୁଁ ତ, ତୁଟାଇ ଦେଇଛି ସକଳ ମମତା
ଶୁଣିବି ବୋଲି ସେ ବାଣୀ ।

ମୁକ୍ତ ପବାଣେ ବଢ଼ାଏ ମୋ କର,
ବହେ ପ୍ରିୟତମ ଧର ଧୀରେ ଧର !
ଜୀବନର ଚିର କଣ୍ଟକ-ପଥେ
ଛୁଡ଼ିଯାଏ କ୍ଷୀଣ ତାର,
ଅଶ୍ରୁରେ ରଚେଁ ହାର !

(ସମାଧି-ସ୍ମୃତି)

[୧୯୨୪]



## ପ୍ରଶ୍ନ

ଜୀବନଟା କି ଖାଲି ଅକୁଳ ନୟନରେ
ଚାହିଁବା ?
କୁଟୀରେ ଏକା ବସି ଉଦାସ ଗୀତ ନିତ
ଗାଇବା ?
ପାଗଳ ବେଶ ସାଜି,
ଛିପ୍ର ଧନ ଆଜି
ଉଦାସେ କହ ଯାଏ ଯାହାକୁ ଖୋଜି
ସେ ତୋ କାହିଁ ବା ?
ସକଳ ଭୁଲି ଆସ ପାଗଳ ଗୀତ ଆଜି
ଗାଇବା ।

ସୁଦୂର ଅତୀତରେ ଭରମ ହେଲ

ଥରେ ଜୀବନ୍ତନ୍ତ

ଆଜ କି ନ ଫେରିବ ଶାନ୍ତି ସୁଖ

କ୍ଷଣ-ସପନେ ?

ଦଳିତ ଏ ପରାଣେ ସେ କର ଯିବ ନାହିଁ

ପରଶି ?

ଦହନେ କି ସୁଶୀତଳ ବାଦଲ ଯିବ ନାହିଁ

ବରଷି ?

ସଞ୍ଚିତ ଅଶ୍ରୁ ଜଳ,

ତହିଁ କି ନାହିଁ ଫଳ ?

ସୁଖର ଆଶା ଭରି ପ୍ରିୟର ଅନୁରୂପ

ଧାଇବା ?

ଜୀବନଟା କି ଖାଲି ଆକୁଳ ନୟନରେ

ଗୁହାଁବା ?

—୧୯୨୫— (ସମାପ୍ତି-ସ୍ମୃତି)



# ମୁକ୍ତି ସେନା

ମୁକ୍ତି ସେନା ! ମୁକ୍ତି ସେନା !

ଦୁଃଖ କି ଭାଇ ? କି ଅବା ଭୟ ?

ନାୟକ ତୋହର ଅନ୍ତର ଶର

କରିଲ ମୃତ୍ୟୁ କରନ୍ତୁ ଜୟ ?

ଗର୍ବେ ନିଶାଣ ଆଜି ତୋଳି ଧର !

ମୃତ୍ୟୁ ଦୁଃଖେ ଫୁତ୍କାର କର !

ପୋଛ ଯେ ଅଶ୍ରୁ ଅଛିହାସେ୍ୟ
ମିଳିତ କର ତୋ ଶକ୍ତିଚୟ;
ଭୈରବେ ଗାଅ, ଗମ୍ଭୀରେ ଗାଅ,
ସତ୍ୟକୁ କିଏ କରିବ ଜୟ ?
ନାହିଁରେ ଭୟ !

ତୋହର ତ୍ୟାଗେ ଭସ୍ମ ଉପରେ
ଉଡ଼ିବ ସତ୍ୟ ଧ୍ୱଜା !
ଅରେ, ଭୈରବ ଭେରୀ ବଜା !
କମ୍ପି ଉଠୁ ଯେ ଶୀତଳ ରକ୍ତ
କମ୍ପୁ ମିଥ୍ୟା ମଜ୍ଜା ।
କହ କହ ନତ ନ କରିବୁଁ ଶିର
ଦେବୁଁରେ ରକ୍ତ ନୟନର ନୀର
ନ ଟଳିବ ପାଦ ମୁକ୍ତି ମାର୍ଗୁ
ନ ଟଳିବ କେବେ ଲକ୍ଷ୍ୟ ଲୟ;
ସତ୍ୟକୁ କିଏ କରିବ ଜୟ ?



## ସ୍ମୃତି

୧—ସେ ତ, ଚପଳା ସହିତେ ଗଲେଣି ବାଦଲେ ଲୋଟି,
ଆଜି, ଦେଖିଛୁ ତା ଷୀଣ ଉଜ୍ଜ୍ୱଳ ତନୁ ଗୋଟି ।
ଗଣ୍ଡେ ତାହାର ଚୁମ୍ବନ ଦାଗ
ଫୁଟିଥିଲା ପଟେ ନବ ଅନୁରାଗ
ପ୍ରଣୟ ପାଗଳ କାହାର ସେ ରୂପ ? ବନ୍ଦୀ ତା ମରମଟି !
ଦେଖିଛୁ ତା ଷୀଣ ଉଜ୍ଜ୍ୱଳ ତନୁ ଗୋଟି ।

ଶ୍ମ—

ଖେଳିଲା ପବନେ ଲୁପ୍ତ ଅଶାନ୍ତି
ସେଇ ଦୂର ଅତୀତର;
ନବ ଯୌବନେ ବାଜିଥିଲା ଯେବେ
ମିଳନ ମଧୁର ସ୍ୱର !
ନାହିଁ, ନାହିଁ, ସେ ତ ନୁହେଁ ପାଇବାର !
ଖାଲି ଗାଇବାର, ଖାଲି ଚାହିଁବାର,
ନ ଚାହିଁ ଉଦାସେ ଲୁଟିଲା ସଫଳ
ଜୀବନ ପୂର୍ଣ୍ଣ କୋଟି;
ଦେଖିଛୁ ଥରେ ତା ଉଜ୍ଜ୍ୱଳ ତନୁ ଗୋଟି ।



୨— ଶ୍ରାବଣ ମେଘ ଅଜି କ୍ଷିପ୍ର ପରି ଦୂରେ
ଯାଉଛୁ ଧାଇଁ,
ସକଳ କଥା ଭୁଲି ଦୁଆର ପାଶେ ସେ ତ
ଥିବ ରେ ଚାହିଁ !
ଲୋତକ ଛଳ ଛଳ, ପୁଟେପୁ ଲୋଟୁଥିବ
ଅଯତ୍ନ ଗନ୍ଧ
ଘନ କାଳିମାବୃତ, ଉଜ୍ଜ୍ୱଳ ସଦ୍ୟ ସ୍ଫୁର୍ତ୍ତି—
ଯୌବନ ଅବା !
ଶ୍ରବଣ ଖସିଥିବ କନକ ଅବତଂଶ
ବଳୟ କରୁଁ,
ତରୁଣୀ ହୃଦସ୍ମୃତି ପାଲଟି ଥିବ ପୁଣି
ନିଦାଘ ମରୁ !

ପେଶଲ କଟି ତାର ସ୍ତନ ଜଘନ ଭାର
ନ ପାର ସହ୍ଣ
ବାତାୟନ ସମୀପେ ଲତକା ସମ ପଡ଼ି
ଥିବ ସେ ଲଇଁ ।

ଅବା ସେ ଭାବୁଥିବ ଜୀବନ କଥା ତାର
ନୟନ ବୁଜି,
କବି ତୋ କଲପନା ପ୍ରଖର ହେଲେ ଅବା
ପାରବୁ ବୁଝି ।
ବରଷା ଆଜ ନବ ତରୁଣୀ ପ୍ରାଣେ ଯେତେ
ଲଗାଏ ବ୍ୟଥା,
ସବୁ ସେ ସହୁଥିବ ସରଗ ଶଶୀ ସମ
ସରମନତା ।

ପରାଣ ସହଚରୀ ନାହିଁ ତା ପାଶେ କେହି
କହିବ ଧୀରେ
କୋମଳ କଥା ମନ୍ଦେ—କପୋଳୁ ପୋଛୁବ କି
ଲୋତକ କ କରେ ?
ତୁହେଁ ସେ ଅନ ଜନ, ଯଉବନର ତର
ଉଜ୍ଜ୍ୱଳ ମଣି
ତୋହର ପ୍ରିୟ ସେ ତ ମାନସେ ପରମାଦ
କାହିଁକି ଗଣି ?

କରୁ ସେ ଅବହେଳା ଫେରାଇ ନେଇ ମୁଖ
ତୋହର କଥା
ନ ଥାଉ ପ୍ରାଣେ ତାର ବିଫଳ ହେଉଅଛେ
ତୋ ଅକୁଳତା ।

ତା ଶୁଭ କଲପନା ତାହାର ସୁଖ ଚିନ୍ତା
କି ଦୋଷ ସେଥି ?
ନିସ୍ପୃହ ନିବେଦନ କରିବା ଶିବ ପାଶେ
ମଧୁର ଏଥି ।

କେତେ କେ କରେ ପାପ ଅନ୍ୟାୟ ଅବସ୍ଥର
କରମ ଘୋର,
ତୋ ପ୍ରିୟଜନ ଲାଗି ଏତିକି ଅଧିକାର
ନାହିଁ କି ତୋର ?
ସକଳ ଭୟ ଭୁଲି କର ତୁ ନିବେଦନ
କରୁଣ ଗାନେ
ନିଠୁର ବାନ୍ଧବାନ୍ଧ ଦଅନ୍ତା ପରମାଦ
ଅବଲା ପ୍ରାଣେ ।



ଗ—ତାର, କନକ ଅାଖି ତାର କଜ୍ଜଳ ଆଖି
ଝର ଝର ବରଷାରେ ଯାଉଛି ଡାକି ।
ବାତାୟନ ପଥେ ଦୂର ଶୂନ୍ୟ ବେଳାକୁ ଚାହିଁ,
ନୀରବ ନୟନ ତାର ଗାଉଥିଲା ନାହିଁ ନାହିଁ,
ଅସ୍ତ ଗଲେଣି ରବି ମନ୍ଦରେ ଆସେ ନାହିଁ
ଚପଳ ଏ ସମୀରଣ ତାର ସାକ୍ଷି !
ତାର କଜ୍ଜଳ ଅାଖି,
ଝର ଝର ବରଷାରେ ଯାଉଛି ଡାକି ।

ଝାଉଁ ବନେ ଶୁଭୁଥିଲା  ତାର ସମବେଦନାର
ହାହାକାର କରୁଣ ଶ୍ୱାସ,
ଭଗ୍ନ ଲହରୀ ଗୀତେ      ସିନ୍ଧୁ ଅସୀମ ପାରେ
ତା ବେଦନା ମଳିନ ଆଭାସ !
ପକ୍ଷୀଗୀତେ ଲଚିଥିଲା  ତା ହତାଶ ନାହିଁ ନାହିଁ
ନଭେ ରୂପ ମଳିନ-ସୁଷମା
ଶ୍ରାବଣ ପୟୋଧର      ମଳିନ ଇନ୍ଦିବର
ବହେ ତାର ନୟନ ଉପମା !

ବେଳାନିଳ କେବେ ଆସି ପୋଛୁଥିଲା ଲୁହଧାର,
ଚଞ୍ଚଳ ଛଷିତରେ      ଚୂର୍ଣ୍ଣ ଚିକୁର ସାର,
ମରମ ପରଶି ତାର ଯୌବନ ହାହାକାର
ଛନ୍ଦେ ମୋ ରହିଗଲା ରୂପରେ ଲାଖି !
ତାର କନକ ଆଖି !
ଝର ଝର ବରଷାରେ ଯାଉଛି ଡାକି ।



୪—ସେ ରୂପର କାହିଁ ତୃପ୍ତି ସଜନି
ମାଧୁରୀର କାହିଁ ଶେଷ ?
ତୃଷିତ ପରାଣେ ଭରଛ ତ ତୁମେ
ସ୍ୱପ୍ନର ସମାବେଶ !
ଯେବେ ଗୋ ଅସୀମ ହେବ ଏ ଜୀବନ,
ନିର୍ନିମେଷ ଏ କ୍ଳାନ୍ତ ନୟନ,

ସୁଦୂର ହେବ ଗୋ ଭୀଷଣ ମରଣ
ଶାନ୍ତ ପରାଣେ ଲେଶ ।
ସେ ରୂପର କାହିଁ ତୃପ୍ତି ସଜନି
ମାଧୁରୀର କାହିଁ ଶେଷ ?

ଜାଣିଛୁ ଅସୀମ ଛନ୍ଦ ସୂଚନା
କରି ସେ ପରାଣ ଅତଳ,
ହେ ଶରତ ଶୁଭ୍ର, ବିମଳ !
ସନ୍ଧ୍ୟାର ରାଗେ ମଉଳି ଯିବ ଗୋ
ପୀରତଛଳେ ଦ୍ୟୁତ କମଳ !

ତା ପରେ ଦୁଃଖ ହତାଶ ମୋହର
ତୁମର୍ ମଧୁର ହାସ,
ତୁମର ଗୋ ଅଶ୍ରୁ ପୀରତ ମୁକ୍ତ
ମୋ ମରମେ ଶର ପ୍ରାସ !
ପିଅନ୍ତ ଯେବେ ସେହି ରୂପ ଗୋଟି
ଅଧରେ ବାରେ ଥରେ ହେଲେ ଲୋଟି
ଧନ୍ୟ ଜନମ ମୋର ଶତକୋଟି
ବେଦନାର ସମାବେଶ;
ସେ ରୂପର କାହିଁ ତୃପ୍ତି ସଜନି
ମାଧୁରୀର କାହିଁ ଶେଷ ?



୫—ସଜଳ ମେଘର ଶୀତଳ ପବନ ଲାଗିଲା;
ମୋର ହୃଦୟ ପରଶେ ପାରିଜାତ ବ୍ୟଥା ଜାଗିଲା ।
ବହୁ ଦିବସର ସଞ୍ଚିତ ଲୁହଧାରା ସେ
କାହାର ଆଘାତ ଆଜ ଗୋ ପରାଣ ପରଶେ !
ଆକୁଳ ଏ ମୋର ଯୌବନ କିବା
ବରଷା ଦୁଆରେ ମାଗିଲା !
ଶୀତଳ ପବନ ଲାଗିଲା !

ସେ ଦିନ ତ ମୋର ଦୁଆରେ ଆକୁଳ ବରଷା;
ସେ ଦିନ ତ ତାର ଝରିଲା ପୀରତିଭରସା;
ସେ ଦିନ କବିତା ଛନ୍ଦ ଦୋଳି ମୁଁ ମେଳି;
ସେ ଦିନ ପବନେ ଅଳୋକ ଅଶାର କେଳି;
ଇନ୍ଦ୍ରଧନୁ ସେ ଯୌବନ ପଟେ
ନାଭିଗଲା କାହିଁ ସହସା !
ଦୁଆରେ ଆକୁଳ ବରଷା ।

ଯାଇଛି ଆଜ ଗୋ ଯୌବନ ଚିର ସ୍ୱପନ,
ମଳିନ କବର ବାଳସ୍ମୃ ମାଲ୍ୟ ଭୂଷଣ,
ରିକ୍ତ ଜୀବନେ ନାହିଁ ନାହିଁ ଛଳେ ଶୋଚନା !
ନାହିଁ କଳ୍ପନା ! ସେ ଲାଗି ନାହିଁ ଗୋ ବେଦନା !
ଯାଇଛି ଯା କିପାଁ କହିଁ ଯାଏ ହୃଦ ?
ବରଷାରେ ସେ ମୋ ଦୂଷଣ !
ଯୌବନ ମୋର ସ୍ୱପନ ।

[ ୧୯୨୫ ]



୭—ତୁମେ ଆସ ଆଜି ବରଷା ସଙ୍ଗତେ ଭାସି,
ତୋଳି ଦିଅ ମୋର ମଳିନ ବାସନା ରାଶି,
ଭୁଲିଯାଏ ଘାସେ କଜଳ ବାଦଲ ଛାଇ,
ରୂପର ତୋଫାନ କରେ ଆଜି ମୋତେ ବାଛ,
ସ୍ୱପ୍ନମୁଗ୍ଧ ଚିର ବାଞ୍ଛିତ
ଚିର କଳ୍ପନାବାସୀ !
ଯାଅ ତୁମେ ପୁଣି
ବରଷା ସଙ୍ଗତେ ଭାସି ।

ଭାଦର ମେଘର ପବନ ଖେଳଇ କେତେ,
ତଟିନୀ ସଲିଳେ ପୁଣି ଶ୍ୟାମ ଧାନକ୍ଷେତେ,
ସଫୁଟି ପୁଲକ, ଚିତ୍ତ ଆନନ୍ଦ ହର୍ଷ,
ଭଗ୍ନତରୁଣ କେବଳ ଏଥି ବିମର୍ଷ
ଚିର ନଇଷ୍ଟିର ସ୍ୱଫଳତା ପ୍ରାଣେ
କଣ୍ଟାଘାତ କରେ କେତେ !
ପବନ ଖେଳଇ କ୍ଷେତେ ।

ଶାରଦ ଆଗମେ କ୍ରନ୍ଦନ ହାହାକାରେ—
ରହିବ ଶୂନ୍ୟେ ? ନ ବଳଇ ମନ ତାରେ !
ଏ ସୁଷମା ସୁଖୁଁ ବଞ୍ଚିତ ହେବାପାଇଁ
ପିପାସା-ଆକୁଳ ମନ ମୋର ମାନୁନାହିଁ ;
ପୀରତ ସ୍ପର୍ଶେ ଯୁକ୍ତ କର ମୋ'
କ୍ଷିପ୍ର ଏ ମେଘ ଧାରେ ;
ଅନ୍ତର ହାହାକାରେ !

—— ——

୨—　　　　　ପୀରତ ଅସିଲ ଅଧରେ ମୁରଲୀ ଧର
ବେନି କାନେ ତାର ଦୁଲୁଥିତ ଟୋପ ଭଲ !
ଗୋଲପର ହାର ତା ଶିରଭୂଷଣ,
ତା ବେନି ନୟନେ ମୁଗ୍ଧ ଭୁବନ,
ବଡ଼ ଚପଲ ସେ ତନୁ ଉଠୁଥିଲା ଥର;
ପୀରତ ଅସିଲ ଅଧରେ ମୁରଲୀ ଧର ।

ତା କଟୀ ମେଖଳା କର କଙ୍କଣ
ମୋହୁଥିଲା କେତେ ଫୁଲେ,
ଅଶା ଶତଦଳ ଫୁଟୁଥିଲା ଅହା
ତା ପାଦ ପରଶ ଫୁଲେ,
ତାକୁ, ଦେଖିଦେଲେ ଥରେ
ସବୁର ମନ ତ ଭୁଲେ,
ଶୋହୁଥିଲା କେତେ ଫୁଲେ । ୧ ।

ଛଳ ଛଳ ମେଘ ଦୂର ନଭକୋଣୁଁ
ତା ରୂପେ ପଡ଼ିଲା ଲାଗି ।
ଉଲସି ଉଠିଲେ ମହୀ;
ଅବନତ ତରୁ କାନେ କାନେ କିବା
ସମୀରଣ ଗଲା କହି ।
ଗାଇଲା ସେ ଗୀତ କହିଲା ଅଥଥ ।
କହ କିବା ତୋର ଅନ୍ତର ବ୍ୟଥା,
ଅଧରୁ ରକତ ଥୋପି ପଡ଼ୁଥିଲା
ପଡ଼ୁଥିଲା ଗୀତ ସ୍ୱର,
ପୀରତ ଅସିଲ ଅଧରେ ମୁରଲୀ ଧର । ୨ ।

ଜୀବନଟାକୁ ସେ ଗାଇଲା ପୀରତି
ସୁଖ-ଆନନ୍ଦ-ଛନ୍ଦେ,
ଡାକିଲା ସେ ଲଗି ବରଦେବ ଆସ
ମୁଗ୍‌ଧ କୁସୁମ ଗନ୍ଧେ ।
କାହିଁକି ଆକୁଳ ନୀରସ ଭୁବନ ଦ୍ୱନ୍ଦ୍ୱେ ?
ଝରଇ ଦିଗନ୍ତୁ ନୀରବ ପୀରତି
ତଟିଣୀ ମନ୍ଦେ ମନ୍ଦେ !
ପୀରତି କୁହଇ ନାହିଁ ମନକଥା,
ଦେଖିର ହତାଶେ ନୁଆଁଇଲି ମଥା;
ବହିଗଲେ ଲୁହ ଭିଜିଲି ଅନ୍ତରେ
ଧୂଳିରେ ଲୋଟନ୍ତି ମନ !
ପୀରତି ଆସିଲା ମଧୁର ମୁରଲୀ ଧରି । ୩ ।



୪—ଦୂରର ଯା ତାର ଅନ୍ତରେ ଅନୁଭବ;
ସେହି ତ ଭକ୍ତ ଜୀବନର ଗଉରବ ।
ସେଥିଲାଗି ସିନା ଆଶା ଶତଦଳ,
ଯୌବନ ଲୁହେ ଶୁଭ୍ର ବିମଳ,
ନ ଥାଏ ପରଶେ ଶତ ବାସନାର ରବ;
ଦୂରର ଯା ତାର ଅନ୍ତରେ ଅନୁଭବ !
ଶାନ୍ତ ମଧୁର ଶାରଦ ଗଗନ
ମୁକ୍ତ ଶ୍ୟାମଳ ପ୍ରାନ୍ତର,
ପବନ ମେଳେ ଆନନ୍ଦ ଗୀତ
ନୀରବେ ପରଶେ ଅନ୍ତର ।

ସନ୍ଧ୍ୟା ଗଗନ ସୁନ୍ଦର କବା

ଆଶାର ରକ୍ତେ ରଞ୍ଜିତ !

ଜୀର୍ଣ୍ଣ ମୋ ବୀଣା ଗଗନକୁ ଚାହିଁ

ଗାଇବ କି ଆଜି ସଙ୍ଗୀତ ?

ଚିର ଜୀବନର ଯେତେ ବିଫଳତା,

ବକ୍ଷର ଶତ ଶତ କ୍ଷତ ବ୍ୟଥା,

ଧନ୍ୟ ସକଳ ! ଶୋଚନା ନାହିଁ ତ ଲବ !

ଦୂରର ଯା ଚିର ଅନ୍ତରେ ଅନୁଭବ ।



୯— ଆପଣାର ବୋଲି ରଖିଛୁ ଯାହା ମୁଁ ପ୍ରାଣେ,

ଦେଇପାରେଁ ମୁଁ ଗୋ ଦେଇପାରେଁ ଦାନ ଗାନେ !

ଦେଇପାରେଁ ସବୁ ସଜଳ ନୟନେ,

ଚିରଦିନଲାଗି ଶୂନ୍ୟ ଏ ମନେ—

ନ ଚାହିଁବ ପଥ ଆଉ ଆଶା-ଅଭିମାନେ !

ଆପଣାର ବୋଲି ରଖିଛୁ—ଯାହା ମୁଁ ପ୍ରାଣେ ।

କହୁନାହିଁ ମୁଁ ତ ସେ ଅସୀମ ସୁଖେ

ହେବି ବୋଲି ଖାଲି ଭାଗୀ,

ନାଅ ନାଅ ଆଜି ଆଦରର ଧନ

ଜୀବନ ରହେ ଯା ଲାଗି ।

ଜାଣିଛୁ ମୋହର ଶୂନ୍ୟ ଆସନ !

ଗଗନ ପବନ ଥିର,

ନ ଡାକିବେ ଥରେ କୁସୁମ କାନନ

ନ ଉଠିବ ଆଉ ଭିଡ଼ !

ସେହି ଦାନେ ମୋର ପୂର୍ଣ୍ଣ ଜୀବନ,
ସନ୍ଧ୍ୟାର ରାଗେ କମଳ ଯେସନ,
ପୂର୍ଣ୍ଣ ମୋ ସୁଖ ଜୀବନର ବ୍ୟବଧାନେ;
ଦେଇପାରେ ମୁଁ ଗୋ ଦେଇପାରେଁ ଦାନ ଗାନେ !

---

୧୦—ଯିବ ? ଯିବ ଯେବେ ମେଲଣି ଦେବ ମୁଁ ହସି,
ଦୁର୍ବଳ ସମାନ ପଡ଼ିବ ମୁଁ ଗୋ ଲସି ।
ମାଟିର ଜନମେ ନାହିଁ କି ମମତା—
ଏ ରୂପେ ? ଏ ଅଖି ଦେଉନାହିଁ ବ୍ୟଥା ?
ଯାଅ—ଗଲେ ପଛେ ଅଶ୍ରୁ ଗଣିବ ବସି ।
ମେଲଣି ଦେବ ମୁଁ ହସି ।

ଦେବ ବୋଲି ଆଜି ତରୁଣ ମୁଗ୍ଧ ପ୍ରାଣ,
ଧରିଅଛି ଦେଖ ମୁକ୍ତ ଉଦାର ଗାନ !
ବଯସନେ ଶାନ୍ତ ସିନ୍ଧୁ ଗଗନେ ରହି,
ଅବସାଦ ମାୟା ନୟନେ ମୋହର କାହିଁ ?
ଯାଅ, ଯାଅ, ସୁଖେ ! ଉଜ୍ଜ୍ୱଳ ତୁମ ମୁଖ !
ତୁମର ସୁଖେ ଯେ ଅସୀମ ମୋହର ସୁଖ !
ମୋ ପୀରତି ନୁହେଁ ପାପକଳୁଷିତ,
ନୁହଇଁ ତ କେବେ ବାସନାଦୂଷିତ,
ଲୁଚିଯାଅ ମେଘେ ତରୁଣି ହୃଦୟ-ଶଶି !
ମେଲଣି ଦେବ ମୁଁ ହସି ।

---

୧୧— ଶାରଦ ଜୋଛନା ରାତି ଧୀରେ ଆସେ ପାହି ଗୋ
ବ୍ୟଥିତ ଚକୋର କିପାଁ କାନ୍ଦେ ?
କ୍ଳାନ୍ତ ନୟନେ କବି ଦୂରପଥ ଚାହିଁ ଗୋ
କରୁଣ ସ୍ୱରଟି ତାରେ ବାନ୍ଧେ ।

ଶାନ୍ତ ନୀରବ ଏହି ଧରା ଗୋ
ପୂର୍ଣ୍ଣ ତରଳ ମଧୁ ଜୋଛନା,
ଆଜି ତୁମ ଅଭିସାର ପରା ଗୋ
ସ୍ତବ୍ଧ ଧରଣୀ କରେ କଳନା !

ମୁକ୍ତ ଗଗନେ ଚାହିଁ ଯୌବନ ମାଗଇ
ଜାଗ୍ରତ ତୃଷ୍ଣା କି ଆଶା ଗୋ,
ଅଙ୍ଗେ ଶୀତଳ ବାଆ ମନ୍ଦେ ମୋ ଲାଗଇ
ମୋ ପୀରତି ପାଏ ନାହିଁ ଭାଷା ଗୋ ।

ଶାନ୍ତ ତାରକା ଦୂରେ ଗାଉଅଛି ସଙ୍ଗୀତ
ପୀରତିର ସତ୍ୟର ଛନ୍ଦ,
ସ୍ନିଗ୍ଧ ଲତିକା ତରୁ ପ୍ରୀତିରସେ ରଞ୍ଜିତ
ପ୍ରାଣଭରା ପୁଲକ ଆନନ୍ଦ ।

ବ୍ୟଥିତ ଚକୋର କିବା ଶୋଚନା ?
ସତ୍ୟ ସେ ନୁହଇ ରେ ଛଳନା !
ସୁମଧୁର ବ୍ୟଥାର ଅନଳେ ସେ,
ଶାନ୍ତ ସେ ମୃତ୍ୟୁ ପରଶରେ !
ପବିତ୍ର ଅନ୍ତର ବଳେ ସେ
ଦୁଃଖୀ ସେ, ନୁହଇ ହରଷରେ !

ଅଙ୍ଗେ ବିମଳ ବିଭା ଖେଳଇ
ଅରୁଣ ଅଧରେ ତାର ହାସରେ;
ତରଳ ପୀରତି ପ୍ରାଣ ଗଳଇ
ବାଣେ ତା ପ୍ରୀତି ପରକାଶରେ ।
ପୀରତି ନୟନ ତାର ଉଜଳ,
ଧରନ୍ତି ସେ ଶିର ଅଣା କମଳ,
ଧନ୍ୟ ଜୀବନ ତୋର ଧନ୍ୟ କାମନା ତୋର,
ଜନମ ବେଦନା ତୋର ସଫଳ !
ଜାଗ ମୋର ଯୌବନ ଜାଗ ରେ !
ଅଙ୍ଗେ ଶୀତଳ ବାଅ ଲାଗଇ !
ତରୁଣ ପବନ ଅନୁରାଗରେ
ତୋ ବେଦନା ଦୁଆରେ ସେ ମାଗଇ ।
ସଂଶୟ ଶୋଚନାଟି ଠେଲି ରେ,
ଦିଅ ମରମର ଗୀତ ମେଲି ରେ;
ଦିଅ ଦିଅ ପୀରତିର ଅର୍ଘ ସେ,
ଦିଅ ସବୁ ସତ୍ୟର ବିଭା ସେ ।
ଅମର ଜୋଛନା ରାତି ଯାଏ ଧୀରେ ପାହି ରେ
ବ୍ୟଥିତ ଚକୋର ନାହିଁ କାନ୍ଦେ !
ଦୀପ୍ତ ନୟନେ କବି ଦୂର ପଥ ଚାହିଁ ରେ
ପୀରତି ସ୍ୱରଟି ତାରେ ବାନ୍ଧେ !



୧୨— ଦୂର ଦେଶେ ଦଶେ ଜାର କନକ ତରୀ,
କଏ ସେ ଗୋ ଜଣା ପଡ଼େ ତୁମର ପରି ।

ଶାନ୍ତ ତଟିନୀ ଜଳ,
ପୀରତରେ ଛଳ ଛଳ,
ସନ୍ଧ୍ୟାର ଗଗ ନବୃଁ ପଡ଼ଇ ଝଁର,
ତୁମେ ଅବା ବନ୍ଧୁ ନାଅ ଜନକ ତସ୍ୱ !

ସ୍ୱାର୍ଥ ବେଦନା ମୋର ପସ୍ୱଣ ଜାଲେ,
କେସନ ତୁମର ସାଥ୍ ଲଭଇଁ ଭାଳେଁ ।
ନୀରବେ ରୂପର ଭୋଗ,
ନୀରବେ ପର୍ଶଣ ଯୋଗ,
ନାହିଁ ମୋ କରମେ ! ତନୁ ଉଠଇ ଥର,
ଦୂର ଦେଶେ ଦଶେ ତୁମ କନକ ତସ୍ୱ ।

ନନ୍ଦୀ କାନେ କହ କବା ଅଫୁଟା କଥା;
ନତଶିରେ ଶୁଣେ ଗିର ମଧୁର ବ୍ୟଥା ।
ବିରହ ବ୍ୟଥାଟି ଜାଲି,
କେଉଁ ଦୂରେ ଯାଅ ଗ୍ଲାଲି,
ମୃଦୁ ହାସେ ଫୁଟେ ଫୁଲ ଅବନୀ ଭର;
ଦୂର ଦେଶେ ଦଶେ ତୁମ କନକ ତସ୍ୱ !



୧୩— ମଧୁର ପୀରତି ନିମେଷ ମିଳନ,
ମଧୁର ପୀରତି ନିମେଷ ସ୍ପର୍ଶ;
ସେତିକ ଜୀବନେ ଅସୀମ ଭରସା !
ସେତିକ ତ ଆଶା ଅମର ହର୍ଷ !
ନିମେଷ ମିଳନେ ଅନ୍ତର ଖୋଲି,
କାହା ପାଶେ ଧାଏଁ ଦୁଇ କର ତୋଳି,

ଅନ୍ତର ପାଶ୍ବ କର ନାହିଁ ଦୂର,
ତାହା ପାଶେ ଗାଏଁ ମୁଁ ଗୋ ବିମର୍ଷ !
ମଧୁର ପୀରତି ନିମେଷ ସ୍ପର୍ଶ ।
ସେ ମଧୁ ମିଳନେ ପଠାଇବ କର ?
ଢାଳିବ ଲୋତକ ମୁକ୍ତାବିନ୍ଦୁ,
ତୁମରି ପରଶ ବେଳାରେ ଲୋଟିବ
ମୁଁ ଶର ଅକୂଳ ଗଭୀର ସିନ୍ଧୁ !

ମୁଦିବ ନୟନ, ପରଶିବ ସୁଖେ,
ଅଶାର ଅଲୋକ ଖେଳିବ ଏ ମୁଖେ,
ନ ରହିବ ଦୂରେ ଅନ୍ତର ପ୍ରିୟ
ଛିନ୍ନ-ଜୀବନ-ଶର-ଅଦର୍ଶ ।
ମଧୁର ପୀରତି ନିମେଷ ସ୍ପର୍ଶ ।

———

୧୪—

ମଳୟ ଯେବେ ସହି ବିଶ୍ବ ପ୍ରାଣ ଦ୍ଵାରେ ବହିଲା,
ସନ୍ଧ୍ୟା ତାରା ଯେବେ ତରୁଣୀ କାନେ ଧୀରେ କହିଲା,
"ଜାଗରେ ଜାଗ ଯୁବା !"···ଅଳସ ନୟନେ ମୁଁ ଚାହିଁଲି—
ସକଳ ହରଷରେ ମିଶାଇ ତୁମ ବ୍ୟଥା ଗାଇଲି ।
ଗୋଲାପ ଯେବେ ଲତା ପବନେ ପ୍ରୀତି ଦେଲା ମିଶାଇ,
ହାସ୍ନା ହେନା ଯେବେ ଜୋଛନା ତନୁ ଦେଲା ନଚାଇ,
ଅକୂଳ ପିକ ଗୀତ :— ସ୍ବପ୍ନ-ରଥ ବହି ! ଅଇଲା—
ମଧୁର ଗୀତେ ତାର ମିଶାଇ ତୁମ ବ୍ୟଥା ଗାଇଲି ।
ବିଶ୍ବ ବିହ୍ବଳ ଗନ୍ଧେ କଲା ଯେବେ ବକୁଳ,
ନ ଜାଣେ କାହିଁ ପାଇଁ ବିଜନେ ବସି ହେଲି ଅକୁଳ,

ଚକୋର ପ୍ରିୟା ଅଟେ ଗାଇଲା "ନଦୀ ପାରେ ରହିଲା !"
ଶୂନ୍ୟେ ଚାହିଁ ଏକା ତୁମର ବ୍ୟଥାଟି ମୁଁ ଗାଇଲି ।

---

୧୫—

ମେଲଣି ବେଳ ହେଲା ! "ଯିବି ମୁଁ !" ବୋଲି ଧୀରେ କହିଲ;
ସୁଦୂର ଅଭିସାର-ଉଦାସ- ଚାହାଣିଟି ରହିଲ ।
"ଯିବ କି ଚାଲି ସତେ ?"— "ଯାଅ !" କହିଲ ମନ ବାରତା,
ମାତର କାହିଁ ପାଇଁ ଛଳେ ତ ତୁଟେ ନାହିଁ ମମତା ?
ଅମର ସେହି ହାସ ସୁଷମା ନିରୁପମ ମଧୁର,
ମିଳଇ କାହିଁ ଭବେ ? ଭୁଲି ପରାଣ ଶର ଅତୁର !
ପାଷାଣ ପରାଣରୁ କେସନେ କରିବି ମୁଁ ଅନ୍ତର ?
କେସନେ ଭୁଲିବି ମୁଁ ଅମର ପ୍ରୀତି ଶର ସୁନ୍ଦର ?
ଜୀବନେ କେତେ ଜାଣି ଚାହିଁଛୁ ନିରଳସ ନୟନ,
ଶୂନ୍ୟ ତୁମ ପଥ, ପୁଣି ଏ ସୁଦୂରର ମିଳନ ।
କେତେ ମୁଁ ଦିନୁ ଦିନ ବିଫଳ ବ୍ୟଥା ଗଣି ଚାହିଁବି ?
ନବୀନ ଯୌବନ ପାଟଣ ଅଁକୁଳେ କେତେ ଗାଇବି ?
ବରଷା ବାଅ ଦୂରେ ପ୍ରବଳ ବେଗେ ଯାଏ ବହି ଗୋ,
ଧୀର ତଟିନୀ ନୀର ସୁଷମା ପାରେ ନାହିଁ ସହି ଗୋ !
ସହିବି ଅବସାଦ କେସନେ ତୁମ ଛବି ହତାଶ ?
ଜୀବନେ ନାହିଁ ଯେବେ ତୁମରି ପୀରତିର ଅଭାସ !

(ସମାଧି-ସ ଥ



## ସନ୍ଧ୍ୟା ମେଘ

ଅଜି, ସନ୍ଧ୍ୟା ଗଗନ ସତ୍ୟ ସୁନ୍ଦର,
ରଞ୍ଜିତ ମେଘ ଗଢ ମନ୍ଥର ।
ଦୂର ଫୁଲ ଉପବନୁ ଧୀରେ ବହେ ସମୀରଣ,
ନିର୍ଜନ ତୀରତରୁ ସଘନ ନୀମଗନ,
ଶାନ୍ତ ସ୍ୱଚ୍ଛୋର ସତ୍ୟ ଶ୍ୟାମଳ ଗିରିବନ
ବନ୍ଧନ ନ ମାନଇ ଅନ୍ତର ;
ସନ୍ଧ୍ୟା ଗଗନ ସତ୍ୟ ସୁନ୍ଦର ।

ଆସ ଆସ ସଜନି ରେ ସୁଖେ ଦେବା ଭସାଇ
ଯମୁନା ସଲିଲେ ନବ ଯୌବନ,
ସ୍ତମ୍ଭନ କଲଣି ଗୋ ବିଶ୍ୱ ପରାଣି ମନ
ସ୍ୱପ୍ନରସିକ କବି କନ୍ଦନ ।
ଏଇ ଶୁଣି ଦୂରୁ ଆସେ ସମୀରଣେ ଥର ଥର,
କୁସୁମ ସୁରଭି ଅବା ନବୀନ ପ୍ରଣୟ ପର,
ଲଜ୍ଜା ସରମ ଭୁଲି ଯୌବନେ ନେବା ବର
ସୁରବାସି-ବାଞ୍ଛିତ୍ର ମନ୍ତର;
ସନ୍ଧ୍ୟା ଗଗନ ସତ୍ୟ ସୁନ୍ଦର ।

[୧୯୨୪]



# ମୁକ୍ତସ୍ୱପ୍ନ

ବନର ମୟୂର ନଗର ସୌଧେ
ବସି ଭାବିଲ ମନେ ମନେ,
ପ୍ରଭାତ ପବନେ ଦକ୍ଷିଣା ମେଘ
ଭାସିଆସେ ଅନୁକ୍ଷଣେ ।

ଭାବିଲେ କାହିଁ ମୋର କାନନ ଭୂଇଁ,
ଉଡ଼ି ଯିବ ଆଜି ସେ ଦେଶେ ମୁହିଁ,
କଳା ମେଘ ନଭେ ଯାଏ ପହଁରି,
ପାଦପ ଲତିକା ଉଠଇ ଥରି,
ଉଡ଼ିଯିବି ମୁ ଗୋ ଉଡ଼ିଯିବି !
କିଏ ପାରିବ ଧରି ?

ବନ୍ଧ ତୋହର ଚରଣଯୁଗଳ
ବିଫଳ ସ୍ୱାଧୀନ ସପନ !
ମୁକ୍ତ ? ସେ ତୋର କଳ୍ପନା ସିନା
କାହିଁ ବା ସୁଦୂର କାନନ ?

ବନର ମୟୂର ଅକୂଳ ନୟନେ
କଜଳ ମେଘକୁ ଚାହିଁ,
ଭାବିଲେ ମନେ ମନେ ନବୀନ ବର୍ଷା
ସଙ୍ଗୀତ ଦେବ ଗାଇ ।
ଗର୍ଜେ ବଜ୍ର ଗଗନଭରେ,
ଚପଳ ଦାମିନୀ ପୁଲକେ ଥରେ,

ବହଇ ଶୀକର ଶୀତଳ ବାଅ,
ତୀରତରୁ ସୁଖେ କହଇ ଅହା !
ଭୁଲଇ ମୟୂର ଅସୀମ ମୁକ୍ତି
ସଙ୍ଗୀତେ ସତେ ନାହିଁ ମୋ ରାହା?

'ବନ୍ଧ ତୋହର ଚରଣ ଯୁଗଳ, ବିଫଳ ମୁକ୍ତି ସପନ;
ମୁକ୍ତି ସେ ତୋର କଳ୍ପନା ସିନା ! କାହିଁ ସେ ସୁଦୂର କାନନ !'
ବନର ମୟୂର ଦେଖଇ ସ୍ୱପ୍ନ ଦୂର ବନ ତରୁଶାଖେ,
ଶ୍ୟାମ ପ୍ରାନ୍ତରେ ବିରହିଣୀ ପ୍ରିୟା ଅକୁଳ ପରାଣେ ଡାକେ !

ଦୁଃଖ ବିରହ ବାରତା କହି;
କ୍ଷିପ୍ର ଜଳଦ ଯାଉଛି ବହି,
ବନ ଅନନ୍ତ ପୀରତି ସୁଖ,
ଭୁଲି ଉଜ୍ଜ୍ୱଳ ମୟୂର ମୁଖ !
ଛୁଟିଲେ ଉଡ଼ିଯିବ ଚୁମ୍ବିବ ପ୍ରିୟା
ବଦନ, କି ମୋର
ଶୋଚନା ଦୁଃଖ ?

'ବନ୍ଧ ତୋହର ଚରଣ ଯୁଗଳ ବିଫଳ ମୁକ୍ତି ସପନ
ମୁକ୍ତି ? ସେ ତୋର କଳ୍ପନା ସିନା ! କାହିଁ ସେ ସୁଦୂର ଗଗନ !'
ଭୁଲଇ ମୟୂର ବିଫଳ ସ୍ୱପ୍ନ ? ବିଫଳ ଏ ମୋର ଜୀବନ ?
ଯହିଁ ନାହିଁ ଶୁଭେ ମୁକ୍ତିର ଗୀତ ଅନୁକୂଳ ବହେ ପବନ !

ମରଣ ଗୋ ତୁମେ ରହିବ ଦୂରେ,
ମୁକ୍ତିର ଗୀତ ପରାଣେ ପୁରେ !
ବାଜୁଛି ବାଜିବ ଯିବି ମୁଁ ଉଡ଼ି,
ଆସିଅଛି ଏଥି ମୋ ପଥ ହୁଡ଼ି !

କଳ୍ପନା ନୁହେ ସତ୍ୟ ସେ ମୋର ସ୍ୱପ୍ନ ସ୍ପର୍ଶ !
ସେ ଦେଶର ନବ ରବି ଶଶାଙ୍କ ଯାଏ ନା ବୁଝି !

ଡାକ ଡାକ ପୁଣି ଅକୁଳେ ପ୍ରିୟା;
ସମୀରଣ କର ଦଗ୍ଧ ହିଆ !
ହସି ଉଠ ଦୂର ପାଦପ ଲତା,
ଶ୍ୟାମ ଗିରି ଭୂଇଁ ଜଗାଅ ବ୍ୟଥା !

ଅମର ମୁକ୍ତି ! ଅମର ସ୍ୱପ୍ନ ! ନତ କରେ କିଏ ଏ ମୋର ମଥା ?
ପାଗଳ ! କ୍ଷିପ୍ତ ! ହେ ଜଳଦ କହ ସେ ଦେଶ କଥା !
ବନ୍ଧି ମୋହର ଚରଣ ଯୁଗଳ ? ବିଫଳ ମୁକ୍ତି ସ୍ୱପନ ?
ମୁକ୍ତି ? ସେ ମୋର ଜୀବନର ସତ୍ୟ ! ବନ୍ଧନ ହେବ ମୋଚନ ।

[୧୯୨୭]



## ରୂପ କଥା

ଭାଦର ନୀଳାକାଶ ବାଦଲ ରଖେ ଅଜି ଘୋଡ଼ାଇ;
ମେଘର ଶତ ଫାଙ୍କେ ଅରୁଣ ଥରେ ଯାଏ ଅନାଇଁ ।

ଏସନେ ତା ନୟନ
ପରଶି ଯାଏ ମନ,

ପାଦପ ଲତା ଯଥା ସମୀରେ,
ତରୁଣୀ ଥରି ଉଠେ ଅଧୀରେ ! ୧ ।

କଜଳ ଦୂର ମେଘ ନୀରବ ଅଖି ତାର କଜଳ
କୋମଳ ଶ୍ୟାମ ଘାସେ ଶିଶିର ବିନ୍ଦୁ ସେ ସଜଳ

କଜଳ ବେଣୀ ଗୋଟି,
ହେଲାରେ ପଡ଼େ ଲୋଟି,

୨ଅ—

ଅଧରୁ ଥୋପି ପଡ଼େ ରକତ,

ବଧୂଲି ଲଜେ ମରେ ନିରତ ! ୨ ।

ତା'ହାସେ ଶାରଦର ଶୁଭ୍ର ଶେଫାଳିକା ଝଁରଇ,

ଭରଏ ଗଙ୍ଗାର ଧବଳ କାଶ ବନ ଥରଇ;

ନାଭିକ ତଣ୍ଟି ବନ୍ଧେ,

ତା ଗୁଣି କେତେ କହେ,

ଯାଧବ ଘର ଝିଅ ମିଥିଳା ପୁରରେ ତାର ସଉଧ;

ଚଢ଼ ଦେଖେ ଭାସିଯାଏ ଉଦାସୀ ସମ

ଧଳା ବଉଦ । ୩ ।

ଦୂରଦେଶର ରାଜା ଯେତେ ଯେ ଆସିଲେ ତା ଆବାସେ,

ତା ରୂପ ମୋହେ ସବୁ ଫେରିଲେ

ନତଶିରେ ହତାଶେ;

ଯୋଗୀ ସେ ଥିଲା କାହିଁ,

ଆସିଲା ଗୀତ ଗାଇ,

ଦୁଆରେ ବୀଣା ତାନ ବଜାଇ,

ତରୁଣୀ ଧୃତି ଦେଲା ହଜାଇ । ୪ ।

ଉଷ୍ଣବୋଲା-ତନ୍ତୁ ବସନ ଗଇରିକ ମୋହିଲା,

ବରଣମାଳା ଗଳେ ଲମ୍ବାଇଲା ନବ ଛଇଳା ।

ମୁଗ୍ଧ ମୁଖେ ଚୁହିଁ,

କହିଲା ଗାଇ ନାହିଁ,

ଆଜ କେ ଗୀତ ତୁମପରତ !

ବୁହାଇ ଦେଲା ପ୍ରାଣେ ଅମର ପୀରତିର ସରତ ! । ୫ ।

ମିଥିଳା ରାଜପଥେ ଯୁଗଳ କର ଧରି ଚଳିଲେ;

ମିଥିଳା ପୁରନାରୀ ଝାପର କରି କେତେ କହିଲେ ।

ଯୋଗୀ ସେ କହେ ହସି
ଯେସନେ ଶୋହେ ଶଶୀ
"ମରଣ ଛାୟା ମୋର ପରାଣ ଘେରିଥିଲା ଯୋହାଟି !
ଜାଣିଛୁ ମରଣକୁ ପୀରତି ଗୀତେ ଆଜ ତୋ ଲାଗି !" ୭।

[ ପାଟଣା, ୧୯୨୭ ]



## ଯୌବନ ପୂଜା

ପୌଷ ଜାଗେ,
ଶିଶିର ଲାଗେ,
ପରାଣି କରେ କ୍ରନ୍ଦନ;
ଏ ତନୁ ମୋର,
ନବୀନ କର,
ଶ୍ୟାମଳ କର ଯୌବନ ! ।୧।
ଅଧର ଭର
ମଦିରା ଝର
ପଡ଼ୁ ଗୋ ସାରା ଭୁବନେ;
ଅଳସ ଆଖି
ପୀରତି ଲାଖି
ବିହରୁ ଚିର ସପନେ ! ।୨।
ସପନ ଲୋକ,
ବେଦନା ଶୋକ,
ପରଶେ ନାହିଁ ଲଭେ ଗୋ;

ମଧୁର ବ୍ୟଥା,
ପୀରତି କଥା,
ନାହିଁ ନ ଥିବ ଭବେ ଗୋ । ୩ ।
ଶ୍ୟାମଳ ଧରା,
କୋମଳ ଖରା,
ପିପାସୁ ପ୍ରିୟ ଗୁହାଣି;
ନ ସରେ ସୁଖ,
ନିରେଖି ମୁଖ,
ଝରଲେ ଦିବା ରଜନୀ ! । ୪ ।
ବକୁଳ ମଲ୍ଲୀ
ସୁରଭ ଢାଳ
ପଡ଼ଇ ନୀଳ ଗଗନୁ
ଉଠଇ ଗାଇ
ପୀରତି ବାଇ
କୋକିଳ ଦୂର କାନନୁ । ୫ ।
ଅଳସ ଚିତ
ତରୁଣୀ ଅତି
ସେ ଡାକେ ଶୁହେଁ ଚମକ;
ଅଳପେ ହସେ
ତରୁଣୀ ରସେ
ପରାଣ ଉଠେ ପୁଲକ । ୬ ।
ପରାଣ ସ୍ଫୂର୍ତ୍ତି
ହୋଇବ ପୂର୍ତ୍ତି
ଜୀବନ ପୂଜା ମହତ,

ନୟନେ ମୋର
ସପନ ବୋଳ
   କପୋଳେ ଲାଜ ରକତ ! ୭ ।

କୁସୁମପରି
ମୋ ଦେହ ଭରି
   ମାଧୁରୀ କର ସଞ୍ଚାର
ଶ୍ୟାମଳ କର
ରୁଚିର କର
   ମଳିନ ଜୀର୍ଣ୍ଣ ସଂସାର ।୮।

ନୈବେଦ୍ୟ ଭରା
ପରାଣେ ପରା
   ଦେବତା କଂଠେ ବନ୍ଦନ;
ଶ୍ୟାମଳ କର
ନବୀନ କର
   ଅମର ନବ ଯୌବନ । ୯ ।

[ ପାଟଣା, ୧୯୨୭ ]



## ମୁକ୍ତିସେନା ସଙ୍ଗୀତ—

ଜୀବନ ଦୀପ ନିଭିଲା, ଧରା   ତମିର କଲା ଗ୍ରାସ,
ପରାଣ ଘେର ବାଜିଲା ଖରେ   ମୃତ୍ୟୁ ଅଟ୍ଟହାସ !
ତୁମରି ଚିର ବିଜୟ ବାନା   ଧରିବୁ କାହା ବଳେ ?
ଅନ୍ତରର ଦେବତା ଅହେ   ପ୍ରଦୀପ ନାହିଁ ଜଳେ ।

ଆରତି ଶଙ୍ଖ ନ ଉଠେ ବାଜି, ଦେବତା ତୁମ ଦେଉଳେ ଅଜି,
ହସଇ ମୃତ୍ୟୁ ଦୈନ୍ୟ-ବ୍ୟଥା ଲୁଣ୍ଠନ୍ତ ପ୍ରାଣ ତଳେ,
ପ୍ରଦୀପ ନାହିଁ ଜଳେ ! ।୧।

ତୁମର ବାଣୀ ବହୁରୁଁ ଶିରେ ଭରସା ନାହିଁ ପାଉଁ,
ତମିର ଘୋର କ୍ଷୁବ୍ଧ ସିନ୍ଧୁ ! କେସନେ ଦଣ୍ଡ ବାହୁଁ ?
ତରଙ୍ଗେ ତେଜ ଉଚ୍ଛ୍ବାସେ, ଭରସା ନାହିଁ ପରାଣେ ଆସେ।
ଶ୍ରାବଣ ରାତି ଆସଇ ଘୋଟି ନୀରବେ କୂଳେ ରହି !
ଭରସା ନାହିଁ ପାଉଁ ।୨

ଚିର ଜୀବନ କର୍ଣ୍ଣଧାର ! ଆଦେଶ ପୁଣି କିବା ?
ଶକ୍ତି ନାହିଁ, ଧୈର୍ଯ୍ୟ ନାହିଁ ! ଲୁପ୍ତ ଆମ ଦିବା ।
ଅଞ୍ଜ ଖାଲି ଅଶ୍ରୁହାରେ କରୁଛୁଁ ନିବେଦନ,
ଭଗ୍ନ ଜାନୁ, ଅସ୍ତ୍ର ହୀନ, ସକଳ ଅଭାଜନ ।
ତୁମର ବାଣୀ ବଜ୍ର ସମ ନେବାକୁ ଶିରେ ହେବୁ କି କ୍ଷମ ?
ରକ୍ତାପ୍ଲୁତ ପରାଣେ ପୁଣି କରିବୁ ତୁମ ରଣ,
ସକଳ ଅଭାଜନ ।୩।

ଅମର ତୁମେ ଅଜେୟ ତୁମେ ଜୀବନ ରାଜା ଚିର,
ଏ ବାଣୀ ପ୍ରାଣେ ସତ୍ୟ ହେଉ ପତାଇ ଦେବୁଁ ଶିର !
ତୁମର ସତ୍ୟ ଦୀକ୍ଷା କରି ମୃତ୍ୟୁ ଯେବେ ଆସେ
ବରଣ କରି ନେବୁଁ ହେ ପ୍ରିୟ ଚିର ବିଜୟୋଲ୍ଲାସେ !
ତୁମର ବାଣୀ ମର୍ମେ ଫୁଟୁ, ଅବିଶ୍ୱାସ ଦୁଃଖ ତୁଟୁ,
ମୁକ୍ତି ପଥ ସରଳ ହେବ ସକଳ ନିବନ୍ଧନେ !
ପରାଣ-ପ୍ରିୟ ଅମର ତୁମେ ଏ କଥା ରହୁ ମନେ ।



# ପ୍ରଭାତ ସ୍ୱପ୍ନ

ବନ୍ଧୁ ସଜଳ ନୀଳ ଅଖି,
ଭାଦର ଆକାଶ ତାର ସାକ୍ଷୀ,
ପ୍ରଭାତ ଶୀତଳ ପବନ ପରଶେ
ପରାଣ ଦୂଅରେ ଯାଏ ଡାକ ।
ବନ୍ଧୁ ସଜଳ ନୀଳ ଅଖି ।୧।

ଶୁଭ୍ର ଶିଉଳି ପଡ଼େ ଝରି,
ବିରହ ମଳିନ ହାସ ଧରି,
ଏ ଦୂର ବିଦେଶେ   କାହାର ସପନେ
କ୍ଷୁବ୍ଧ ପରାଣ ରହେ ଲଖି ।
ବନ୍ଧୁ ସଜଳ ନୀଳ ଅଖି ।୨।

ତା ବେଦନା ବହେ ଶ୍ରାବଣ,
ନୀଳ ଧାନ କ୍ଷେତ ଉଦାସ,
ସମୀର ଲହରେ ତା ଚପଳ ଗତି
ପରାଣର କଥା ରହେ ଚାକି ।
ବନ୍ଧୁ ସଜଳ ନୀଳ ଅଖି ।୩।

କଏ ଗୋ ବଇଁଶୀ ଉଠେ ବାଜି,
ବନ୍ଧୁ ପଥଟି ଚାହିଁ ଚାହିଁ
ନୀଳ ଧାନକ୍ଷେତ   କରଇ ଅଧୀର,
ତରୁଣୀ ଶ୍ୟାମଳ ପ୍ରୀତି ଚାଖି
ବନ୍ଧୁ ସଜଳ ନୀଳ ଅଖି ।୪।

ନୀରବ ନୟନେ ପଦେ କଥା
ସେ ଲାଗି ଜୀବନେ ଏତେ ବ୍ୟଥା

ମାତର ସେ କଥା   ହୁଏ ନାହି କୁହା
ଛନ୍ଦ କବିତା ସବୁ ଫାଙ୍କି;
ବନ୍ଧୁ ସଜଳ ନୀଳ ଆଖି । ୫ ।

ଏ ରୂପର ନବ ନବ ଖେଳା,
ତନ୍ଦ୍ରା ଅଳସେ ବହେ ବେଳା;
ଭାଦର ମେଘର ରଞ୍ଜିତ ରାଗ
କିଏ ଗୋ ପରାଣେ ଯାଏ ମାଖି ।
ଦୂର ପରବାସେ ମଧୁର ବିରହ
ବନ୍ଧୁ ସଜଳ ନୀଳ ଆଖି । ୬ ।

[ ପୁରୁଲିଆ, ୧୯୨୮ ]

## ଗୋଲାପର ବ୍ୟଥା

ଦିବସ ମୋର ବିଫଳ ଗଲା ନ ହେଲା କହି ଜୀବନ କଥା,
କ୍ଷଣକ ପ୍ରୀତି ଭରସା କରି ମରମେ ମଲା ମରମ ବ୍ୟଥା ।
କୁସୁମ ଦଳ ଗୋଟିକି ଗୋଟି,
ସନ୍ଧ୍ୟା କୋଳେ ପଡ଼ିଲେ ଲୋଟି,
ବିତେଇଲେ ମୁହିଁ କା ପଥ ଚାହିଁ ମୁଦିବି ବେନି
ନୟନ ପତା ।୧।
ଦେଖିଛ ତାକୁ ଥରେ କି କବି ?
ପୂନିଅ ଶଶୀ ସାଗର ଛବି !
ମଦିରା ଛଳ ଅଳସ ଗତି ସ୍ନିଗ୍ଧ ଆଖି —
ସରମ-ନତା । ୨ ।

ଯେସନେ ସନ୍ଧ୍ୟା ପରଶେ ଭୂଇଁ,
ଗ୍ଲେର ମଳୟ ଯାଏ ଗୋ ଛୁଇଁ
ଜୋଛ୍ନା ଜଳେ ପଖାଳି ପାଦ ସେ ଅସେ ଲାଜେ
ନୁଆଇଁ ମଥା । ୩ ।

ଗ୍ଲହିଁଲେ ସେ ତ କମଳ ଫୁଟେ
ସବୁଜ କ୍ଷେତେ ସମୀର ଛୁଟେ,
ରୂପ ସାଗରେ ଖେଳଇ ତେଜ ହସଇ ଚନ୍ଦ୍ର
ପାଦପ ଲତା । ୪ ।

ଶେଫାଳି ସମ ଝରିଲେ ହାସ,
ନ ରହେ ପ୍ରାଣେ ବେଦନା ପ୍ରାସ
ଥରଇ କାଶ ସୁରଭି ଶ୍ୱାସ ଲୁଟଇ ଯେତେ
ପ୍ରୀତି ମମତା । ୫ ।

ଝପଲ ମୋରି ମଧୁର ବାସ,
ଅଧରେ ଫୁଟି ମରଇ ହାସ,
ଵଜନ ପୁଷ୍ପ ଵଚହେ ତାର କି ଶମଶାନ
ଜାଣିବ କେତା ।୬।

[ ସୁବୁଲଅ, ୧୯୨୮ ]



## ଦୋଳ ପୂର୍ଣ୍ଣିମା

ଫଗୁଣ ପୁନିଅ ଚ୍ଛନ୍ଦ !
ବାନ୍ଧ ସଜନ ବାନ୍ଧ,
ପୀରତି ନିବିଡ଼ ଭୁଜ ବନ୍ଧନେ
ଲୟ ହେଉ ଅବସାଦ !
ଫଗୁଣ ପୁନିଅ ଚ୍ଛନ୍ଦ ।

ବଶ୍ୱ କଣ୍ଠୁ ଆଜ,
ସଙ୍ଗୀତ ଉଠେ ବାଜି !
ଏକଇ ଛନ୍ଦ ଗୀତ,
ଆଦର ମମତା ପ୍ରୀତ !
ବିହ୍ୱଳ କବି ଗାଏ,
କଳ୍ପନା କାହିଁ ଧାଏଁ,
ଅନ୍ତରେ ପୁଲ୍କି          ବାହାରେ ଖେଳଇ
ଜୋଛନାର ଅହ୍ଲାଦ !
ଫଗୁଣ ପୂନଅ ଚନ୍ଦ !

କେଉଁ ସକେ ଆଜ          ପରଶି ଗଲାଣି
ସ୍ନେହର ମଲୟର ବାଣୀ
ଶୂନ୍ୟେ ଭ୍ରମଇ          ଅମୃତ ପରି
ପିଅ ଗୋ ସଜନୀ ଶୁଣି ।
ଜୋଛନା ପ୍ଲାବନେ          ସରଗ ମର୍ତ୍ତ୍ୟ
ପଡ଼ୁ ନାହିଁ କିଛି ଦୃଷ୍ଟି
ମୁକ୍ତ ପବନେ          ଗଗନେ ଭୁବନେ
ନବ ବସନ୍ତ ପୂଜା !
ଗୋଲାପ ମଦିରା-ରାଗେ,
ତୁମେ ନବ ଅନୁରାଗେ,
ରଞ୍ଜିତ କର ପ୍ରାଣ,
ଅଣ ଗୋ ଅଧର ଅଣି,
ଦିଅ ବୋଲି ମୋର ଦେହେ,
ନବ ବସନ୍ତ ସ୍ନେହ !

ଅନ୍ତରଭର ବାସେ,
ମନ୍ଦ ମଧୁର ହାସେ !
ମାତି ଉଠୁ ପ୍ରାଣ       କଣ୍ଠ ସଙ୍ଗତେ
ଭୁଲି ସଂଶୟ ବାଦ !
ଫଗୁଣ ପୂନିଅ ଛନ୍ଦ !
ଆଜି ଜୋଛନାରେ       ଫୁଟିଛନ୍ତି ଗୋଲାପ
ଫୁଟିଛି ମଧୁର ମଲ୍ଲୀ
ଯୌବନ ବନେ       ନବ-ବସନ୍ତ-
ଉତ୍ସବ ନୁହେଁ ଭଲ ।
ଭୁଲ ଭୁଲ ସବୁ       ସଂଶୟ ଦୁଃଖ
ଆନନ୍ଦ ନିଅ ବର !
ଷଡୀକର ପ୍ରୀତି—       ପୁଲକେ ନିଅ ଗୋ
ଜୀବନ ଅମର କର !
ଉଜାଡ଼ କର ଗୋ       ମାଧବୀ ଜୋଛନା
ନାହିଁ ଭୟ ପରମାଦ
ଫଗୁଣ ପୂନିଅ ଛନ୍ଦ ।
କୋକିଳ ଉଠଇ ଗାଇ,
ବକୁଳ ଗନ୍ଧେ ବାଇ,
ଚରଣେ ତା ଚପଳତା
ପୀରତି ମଧୁର ବ୍ୟଥା,
ଛୁରୁ କଣଲମ୍ବେ ଲତା—
ପାଦପର ମାଦକତା ·
ଅଲଲନ ଆଜି       କିଂଶୁକ ବନେ
ଗରବେ ଢୋଳିଛି ମଥା !

ନାହିଁ ନାହିଁ ଅବସାଦ !
ଫଗୁଣ ପୂରିଅ ଗୁନ୍ଦ !

ବିଶ୍ୱର ନରନାରୀ,
ସକଳେ ଅମେ ଗୋ ଅଳି !
ବୃଦ୍ଧ ତରୁଣ ଯାଗୀ,
ଉଠ ଅନନ୍ଦେ ମାତି !
ନବ ବସନ୍ତେ କବି,
ରଞ୍ଜିତ ବାଳ ରବି,
ଅହ୍ୱାନ କରେ ମଧୁ ଉତ୍ସବେ
ଖୋଲ ଗୋ ଦୁଆର ଖୋଲ !
ଅଜି ପୀରତିର ଦୋଳ ।

ଅସ ଗୋ ଅସ ଗୋ ଶିଶୁ,
ତୁମ ସଙ୍ଗୀତ ମିଶୁ,
ଏ ମୋର କ୍ଷୁବ୍‌ଧ ପ୍ରାଣେ,
ଉଚ୍ଛ୍ୱ ଜୀବନ ଗାନେ,
ଘୋଷ ମରଣ ଭୟ,
ଅବହେଲେ ଅଜ ଜୟ ।
ମୁକ୍ତ କର ଗୋ ପ୍ରାଣ,
ଭର ବସନ୍ତ ଗାନ,
ମଞ୍ଜୁ କୁସୁମ ଗନ୍ଧ,
ମନ୍ଦ ମଳୟ ଛନ୍ଦ,
ଉଜ୍ୱଳ ଦିଗ ଭାଗ,
ଜୀବନ ଦେବତା ଜାଗ !

ନବୀନ କୁଞ୍ଜେ  ଶୁଭଇ କାହାର
ମନ୍ଦ ମୁରଲୀ ନାଦ !
ଫଗୁଣ ମୂକଅ ଗ୍ଧନ୍ଧ ।

[ ପୁରୁଲିଆ, ୧୯୨୪ ]

## ରାଜ-ଡେଙ୍ଗମାଳ୍ଲ

ରାଜାର ତନୟା ସ୍ୱପ୍ନ ରାଜ୍ୟେ
ସଙ୍ଗୀତେ ତାର ବାସ,
ଏଇ ପଥେ ଯାଉଁ ଢାଳିଗଲା କେତେ
କୁସୁମ ଧବଳ ହାସ !
ନ ଥିଲା ତା ଅବକାଶ !
ତା ଦେହ ଗନ୍ଧେ ପ୍ରାଣ ମନ ବାଇ,
ସନ୍ଧି ତରୁଣ ରହିଲା ଅନାଇ,
କହିଲା ଅଧୀର "ମୁଗୁଧ ମୁଁ ତୁମପଠାଇଁ !"
କହିଲା ସେ "ନାହିଁ ନାହିଁ ।"
"ବାଫଳେ କାହିଁକି ଅସ ?"
ନ ଥିଲା ତା ଅବକାଶ ।
ରାଜାର ତନୟା ଗୁଲିଗଲେ ଯେବେ
ଖସିଲା ତା ଗଭା ଫୁଲ;
ତରୁଣ ମନ ଅକୁଳ !
ଅଧୀର ପରାଣେ ନେଲା ତା ଗୋଟାଇ,
ବକ୍ଷେ ଜଡ଼ି ସେ କହିଲାତ "ନାହିଁ,

ନାହିଁ ଅଉ ଏଡ଼େ ସୁନ୍ଦର ସମତୁଲ,
ଚିର ଅମୃତ ଏ ମୋ ପୀରତିର ଫୁଲ !”
କହେ କ୍ଷେମା ପୁଣି “କଣ୍ଟକେ ପ୍ରୀତି କାହିଁ ?”
“ପୀରତି କୁସୁମ ନାହିଁ ।”
ରାଜକ୍ଷେମା ଅହା ଛିଣ୍ଡ଼ି ଗଲା ତାର
କନକ ନୂପୁର ଗୋଟି;
ତା ପାଦ ପରଶେ ଉପର ପରଶେ
ଉଜଳ ତାରକା କୋଟି !
ତରୁଣୀ ତା କରେ ଯତନେ ଖଞ୍ଜି,
କାହାରୂପ ଭାବେ ରହେ ସେ ମଜ୍ଜି,
କ୍ଷେମା କହେ “ଅଗୋ କନକ ବଳୟ କାହିଁ ?”
“ମଳିନ ଅଭାବେ ପୀରତି ଫୁଟଇ ନାହିଁ ?”
ମୁଗ୍‌ଧ ତରୁଣ ଗାଇଲା ତା ବୀଣା ଧରି,
ମାଧବୀ ନିଶୀଥେ ଅବା ଯଉବନ ଭରି;
ଗାଇଲା ଅମର ରୂପର ବିକାଶ,
ତୁମରି ସେ ଲୀଳା ତୁମରି ସେ ହାସ,
ଧନ୍ୟ ଅଜି ମୁଁ ଅସିଛି ଅତିଥି ତବ !
ଗାଇଯିବ ଗୀତ ସୁନ୍ଦର ଅଭିନବ ।
ହସି କହେ କ୍ଷେମା ତୁହି,
“ବନ୍ଦୀ ମୁଁ ତୁମ ଠାଇଁ !”
“ନିଅ ନବ ମୋର କଣ୍ଠର ଆଭରଣ !
କିଏ ଶିଖାଇଲା ସଙ୍ଗୀତ ବିମୋହନ ?”

[୧୯୨୯]



## ଆରତି

୧- ଅନ୍ତରେ ମୋର ଆରତି,
ତୁମ ଜୟ ମୋର ଭାରତୀ,
ତୁମରି ବିଜୟ ନିଶାଣ ଧରି ମୁଁ
ଲଭେଁ ଗୋ ପରାଣେ ଶକତି ।୦।
ଦୁଃଖେ ମୋର ଗୋ ମାଗେ ତୁମ ଦାନ,
ଅନ୍ଧାରେ କହେ ଗାଇବାକୁ ଗାନ !
ନିଃସ୍ୱ ହେଲେହେଁ ଛିନ୍ନ ପରାଣ
ଅରପେ ବିନୟ ଭକତି ।
ଅନ୍ତରେ ମୋର ଆରତି ।୧।
ଏ ମରତେ ନାହିଁ ସଦା ମୋର ଥାନ,
କାହା ମନ୍ଦରେ ନାହିଁ ଆସନ,
ଅଛି ପ୍ରିୟ ତବ ପ୍ରୀତି ଆହ୍ୱାନ,
ହେ ମୋର ଜୀବନ ମୁକତି ।
ଅନ୍ତରେ ମୋର ଆରତି ।୨।
ଶାନ୍ତ ତଟିନୀ ଅନାଏ ଗଗନେ,
ସନ୍ଧ୍ୟା ତାରକା ନଭ ଅଙ୍ଗନେ,
ନୀରବ ମୁଗଧେ ତୀର ତରୁ ସମ
ପଦ୍ମରେ ଢାଳିବି ପ୍ରଣତି ।
ଅନ୍ତରେ ମୋର ଆରତି ।୩।



୨— ଯହିଁ ଫେରେ ମୋର ଦୃଷ୍ଟି,
ତୁମରି ରୂପର ସୃଷ୍ଟି !
ଜୀବନ ଦେବତା ତୁମରି ପ୍ରକାଶ,
ମୁକ୍ତ ଆକାଶ ଝୁରୁ ଝାଣ ହାସ !
ଜୀବନର ଯେତେ ବିଫଳ ପ୍ରୟାସ
ବେଦନା ତୁମରି ତୁଷ୍ଟି;
ଏ ସକଳ ଦେଖି ମୋର ଚିର ନିଠ
ତୁମରି ରୂପର ସୃଷ୍ଟି ।୧।

ପ୍ରଭାତ ଅଲୋକ ଯାଏ ଗୋ ମିଳାଇ,
ପ୍ରାନ୍ତର ବନ ନଦୀ କହେ ଯହିଁ
ନାହିଁ ଗୋ ଦେବତା ଦୈନ୍ୟ ଗ୍ଲାନି
ଅତୀତ ଜୀବନ ସ୍ମୃତି।
ମୋ ଜୀବନ ପୂଜା ମଳିନ କୁସୁମେ
ତୁମରି ରୂପର ସୃଷ୍ଟି ! ।୨।

ମିଳନ ପ୍ରଥମ ଅସ୍ଫୁଟ ହାସ,
ମରଣର ବ୍ୟଥା ବିଚ୍ଛେଦ ତ୍ରାସ,
ଚଳ ଯା ତା ଲାଗି କାହିଁକି ପ୍ରୟାସ ?
କାହିଁକି ଲୋତକ ବୃଷ୍ଟି ?
ଜୀବନ ସଙ୍ଗେ ପ୍ରୀତି ଆନନ୍ଦ
ଢାଳି କର ରୂପ ସୃଷ୍ଟି ! ।୩।



୩— (ସେବେ) ଅନ୍ତର ଗାଏ ସବୁ ଆସିଲଣି ବେଳ,
ଯୁଗଳ ପରାଣ ଦେଖି ଲଗାଅ କି ଖେଳ ?
ପ୍ରୀତିରେ ପରାଣ ଆହା ଦିଅ ଭରି,
ଅନ୍ତର ବୀଣା ଧୀରେ ଉଠେ ଥରି,
ବିନୟେ ଗୋ ମୋର ଅବନତ ହୁଏ ଶିର ।
ହେ ମୋର ଦେବତା ତାଲଈ ଅଶ୍ରୁ ନୀର !
ମିଳନର ରାଗେ ବିରହ ଗୋ ଯାଏ ମିଳି,
ଜୀବନ ସ୍ପର୍ଶେ ମୃତ୍ୟୁ ହୁଅଇ ଲୀନ ;
କି ମଧୁରେ ଡାକ ବସିଲେ ଦୁଆର ଖୋଲି
ଅମା ଅନ୍ଧାର ଭେଦି ହସେ ଶୁଭଦିନ !
ଗାଏଁ ଜୀବନର ଗାଥା;
ହେ ମୋର ଜୀବନ ଦାତା !

ତୁମରି ଆଲୋକେ ବିକଶୁ ଜୀବନ
ଶୁଭ୍ର କମଳ ସମ,
ତୁମ ବିଶ୍ୱାସେ ଦୁଃଖ ଦୈନ୍ୟ
ସହିବାରେ ହୁଏ କ୍ଷମ ।
ଜୀବନ ନିକଟେ ନିଅ ମୋତେ କିଣି
ହେ ମୋର ଜୀବନ ପ୍ରିୟ !
ଆଜି କି ଆଦେଶ ଦିଅ ?
ନାହିଁ ସଂକୋଚ, ନାହିଁ ନାହିଁ ଭୟ,
ତୁମରି ପ୍ରୀତିରେ ପରାଣ ବିଳୟ,
ଜାଣେ ମୁଁ ଜୀବନ କରିବାକୁ ଅରପଣ;
ଅଜ୍ଞାତେ ମୋର ଏ ସକଳ ଆୟୋଜନ !

ଦାଅ ଚୋ କର୍ମ ସ୍ୱର;
ତୁମର ଅଜ୍ଞା ସାର !

ପବନ କର ସୁନ୍ଦର ଉର
ଏ ମୋର କ୍ଷୁବ୍ଧ ପ୍ରାଣ !
ସକଳ କର୍ମେ ଗାଏ ମୁଁ ତୁମର ଗାନ !
ତୁମର ଯୋଗ୍ୟ କର ନାଥ ମୋତେ
ଦାଅ ଚୋ ତୁମର ଦୀକ୍ଷା
ଜୀବନ ସଙ୍କେ ଶତ ଅନନ୍ଦେ
ଏତକ ମୋହର ଭିକ୍ଷା ।

[ ଡିସେମ୍ବର, ୧୯୬୯ ]

୪—

ଅଜ ଦେବ ବୋଲ କେଉଁ ଦୀକ୍ଷା,
ଲଗାଇଲ ଏ ପରୀକ୍ଷା ?
ହେ ପରମ ପ୍ରିୟ ଅନ୍ତରତମ
ମାଗିବକ ଅଜ ଭିକ୍ଷା ?

କେତେ ରୂପେ ଭାବେ ନେଇଛ ପରଖି,
ଦୁଃଖ-ଅକୁଳ ପଡ଼େଁ ଯେବେ ଥକ,
ଦୈନ୍ୟେ ମାଗିଛ ଜୀବନର ଦାନ
ଚମୋ ଜୀବନ ପ୍ରହେଳିକା !
ଲଗାଇଲ କ ପରୀକ୍ଷା !
ନାଶା ବାତ୍ୟା ଏ ଜୀବନେ କେତେ
ବିକଳ କରିଛୁ ପ୍ରାଣ,
ଅଚୋ ଚରଣେ ଅନନ୍ଦ ହାସେ
ଗାଇବାକୁ କହ ଗାନ !

—୯୦

ପର୍ଶଣେ ମରଣ ଦିଅ ଗୋ ମିଳାଇ,
ସେନେହ ପ୍ରୀତିରେ ଦୁଃଖ ନଥ ନାହିଁ,
ଅଶ୍ରୁ-ଅତୁଳ-ପରଶି ଶିନଯ୍ୟେ
କରେ ତୁମର ପ୍ରତୀକ୍ଷା !
ତୁମର ଇଚ୍ଛା ପୂର୍ଣ୍ଣ କର ଗୋ
ଏତିକି ପଦ୍ମରେ ଭିକ୍ଷା ।

[ ଡିସେମ୍ବର, ୧୯୬୯ ] ————

୪ —

ରୁଦ୍ର ହେ ମୋର ପ୍ରିୟ,
ଅଶ୍ରୁ ବେଦନା ଦିଅ !
ମରଣ ସମାନ ଅସୁ ଘନ ଘୋଟି,
ବକ୍ଷ ପରଶି ହେଲେ ଯାଉ ଲୋଟି,
ସିତ ଉପହାସେ ପଡୁଥ ପର୍ବତନ !
ଜୀବନର କୂଳେ ରହି—
ତୁମ ଜୟ ଗିବ ଗାଇ ।
ତଦଣ୍ଡେ ଅସିଲେ ଟେଉ ଅଗଣିତ
ବକ୍ଷ ମୁଁ ଦେବି ପାତି
ଅଟଗା ଦରଦ୍ର ସାଥି !
ଅଲେକ ବନ୍ଧନେ ଖୋଜୁଅଛି ଯହିଁ
ଅମା ଅନ୍ଧାର ରାତି !
ତୁମର ପୀରତି ଭରସା ମୁଁ କରି,
ଅକୂଳ ସାଗରେ ବାହି ନେବି ତରୀ
ଯେତେ ରୂପେ ଅସ ସୁନ୍ଦର ଶିବ
ମୋର ଶର ବରଣୀୟ ।
ରୁଦ୍ର ହେ ମୋର ପ୍ରିୟ ।



୨— ପ୍ରଭାତ ଆଲୋକେ ସୁନ୍ଦର ପ୍ରତିଭାତ !
ଚିର ଅମୃତ ହେ ମୋର ଜୀବନ ନାଥ ।
ଜୀବନ ସହିତେ ଉଠିଲ ହେ ଥର
ମଳୟ ପରଶେ କିଶଳୟ ସର !
ଅମୃତ ଶତଦଳ ।
ନିଅ ମୋ ଅଶ୍ରୁ ଜଳ ।
ପ୍ରଭାତ ସହିତେ ସକଳ ସୃଷ୍ଟି ବନ୍ଦେ,
ତଟିନୀ ଆକାଶ ନିତ୍ୟ ନବୀନ ଛନ୍ଦେ;
ଭ୍ରମର ପୟରେ ଜୀବନର ଇସ୍ୟ ଗାଏ,
ନୀଳ ପରବତ ମୁଗ୍ଧ ନୟନେ ଚାହେଁ !
ନାବିକ ଚଳାଏ ତରି
ତୁମ ଜୟ ଗାନ କରି !
ପୂରୁବ ଗଗନେ ଗାଏ ତବ ଜୟ ସୂର୍ଯ୍ୟ,
ମଳିନ ମୃତ୍ୟୁ ତବ ପଦତଳେ ପୂଜ୍ୟ ।
ଚୌଦିଗେ ଅଜି ପୂର୍ଣ୍ଣର ଏ କି କାନ୍ତି !
ଏକି ଗୋ ମାଧୁର୍ଯ୍ୟ ଶାନ୍ତି !
ତଟିନୀ ବକ୍ଷେ ଶାନ୍ତ ସୁଷମ ଲହରି !
ତେସନେ ପୂର୍ଣ୍ଣ ସ୍ୱରୂପ ରହିବି ଚାହିଁ;
ଦେବି ମୋ ମୁକ୍ତ ପ୍ରାଣ,
ଚିର ଦରିଦ୍ର କି ଦେବି ମୁଁ ପ୍ରତିଦାନ ?



୭— ଜୀବନ ପଥ ଯେବେ ଯାଏ ହଜି
ଅକୂଳ ବେଦନାରେ ବୁଲେଁ ଏକା,
ବନ୍ଧୁର ପ୍ରାଣ କା'ର ରସେ ମଜି
ଖୋଜିଲି ହେବ ବୋଲି ଥରେ ଦେଖା !
ଖୋଜିଲି ପର୍ବତର ଶାଳବନ
ଶଇଳ ନଦୀ କୂଳ ଧାନ କ୍ଷେତ,
ଶୂନ୍ୟ ଜନପଦେ ସମୀରଣୀ
କି ଭାଷା କହିଯାଏ ଜାଣେ ସେତ ।
ଦିବସ ଶେଷେ ରବି ଯାଏ ବୁଡ଼ି
ଯାଏ ଯେ ଉଡ଼ି ବାସେ ମୂକ ପକ୍ଷୀ,
ପବଣ ଚାଏ ମୁଁ ଟେ ପଥ ହୁଡ଼ି
ଜୀବନ ପଥେ ଏକା ଗଲି ଥକି ।
ହୁଡ଼ିଲେ ହୁଡ଼େଁ ପଛେ କି ଶୋଚନା ?
ଦେବ କି ନାହିଁ ଥାନ ଟିଏ ଲତା ?
ଶତ ଲୋତକ କରି ବରଷଣ
ଏ ଦେଶେ ଢାଳି ଯିବି ମୋର ବ୍ୟଥା ।
ମୂକ ଶଇଳ ଏଥି ରହ ଚାହିଁ,
ଶାନ୍ତ ଏ ଅକାଶ ବିମୁକତ;
ଭାବନା ପ୍ରାଣେ ଅଜି କାହିଁପାଇଁ
ରଚିବ ମୋ ସପନ ଏଥି ଶତ ।
ବିରଳ କୁଟୀରଟି ବିରୋଳରେ
ବନ୍ଧୁ ପଥ ମୋର ଥିବି ଚାହିଁ,
ସନ୍ଧ୍ୟା ଗୋଧୂଳିର ଅଲୋକରେ
କାଢ଼ ଏ ପଥେ ଯାଏ ବୀଣା ବାଇ ।

ସ୍ୱଂଗ—

ସୁଦୂର ପଥିକ ଗୋ ନାହିଁ ଦେଖି ?
ଭୂଷଣ ଶିଖାହୀନ ରୂପ ତାର ?
ଲକ୍ଷ ରକତେ ପ୍ରୀତି ଯାଏ ଲେଖି,
ସୃଷ୍ଟି ବ୍ୟଥା ତାର ଗଳାହାର ।
ମନ୍ଦହାସେ ପୁଣି ତା ଅଧର
ଥରନ୍ତି ପ୍ରଣୟ କି ଅନୁରାଗେ ?
ଫୁଟଇ ଅମର ଗୀତ ଜୀବନର
ଫୁଟଇ କମଳ ଶତ ଦଳ ରାଗେ ।
ଧନ୍ୟ ହୁଏ ନିଖିଳର ବ୍ୟଥା
ନିର୍ଝରର ତାର ଜାହ୍ନବୀ,
ଶାନ୍ତ ସରଗର ମାଦକତା
ବହୁ ସେ ନିତ ଅଁସେ ମୋର ଛବି !



୮— ମଧୁ ମଳୟର ଦ୍ୱାରେ,
ସୁନୀଳ ତଟିନୀ ଧାରେ,
ନିରେଖିଲି କାର ଶୁଭ୍ର ମୂରତି,
ସନେହେ ପରଶି ଢାଳିଲି ପ୍ରଣତି,
ଗାଇଲି 'ହେ ମୋର ଅରୂପ ଶକତି
ଆଜି ତବ ଅଭିସାରେ—
ଆସିଛି ବଧୂର ପ୍ରଣୟିନୀ ତବ·
ସୁନୀଳ ତଟିନୀ ଧାରେ !
ମଧୁ ମଳୟର ଦ୍ୱାରେ ।

ଶୁଣିଛୁ ଅଳି ଗୋ ସ୍ନିଗ୍ଧ ଯେ ଡାକ,
ତରୁ ମର୍ମରେ ! ମୁହିଁ ନିର୍ବାକ,
ଚାହିଁଛି ସୁଦୂରେ କା ଭରସା ରଖି
ଗଳିତ ଅଶ୍ରୁଧାରେ,
ମଧୁ ମଳୟର ଦ୍ୱାରେ ।

ଡାକ ପୁଣି ମତେ ବସନ୍ତ ସଖା,
ଭୁଲେଁ ଅବହେଳେ ମୃତ୍ୟୁ ଶଙ୍କା;
ସକଳ ମଳିନ କୁତ୍ସିତ ଭୁଲି,
ତଟିନୀ ଯତ୍ର ମୁଁ ପଲ୍ଲବ ଉଚ୍ଛୁଳି,
ସୁନ୍ଦର ତବ— ରୂପ ରସେ ମଜ୍ଜି
ଯାଉ ମୋ ଶତ୍ରୁ ପୀରତରେ ହଜି
ଅଳି ! ଏ ତଟିନୀ ଧାରେ,
ମଧୁ ମଳୟର ଦ୍ୱାରେ !

ଅଦୂରେ ଶୋଭଇ ଅମ୍ର ମୁକୁଳ,
ତା ସମ ପରାଣ କଲା କେ ଆକୁଳ ?
ଜଡ଼ିତ କର ଗୋ ପ୍ରେମ-ଦୁକୂଳ
ବିରହିଣୀ-କବି-ଅଙ୍ଗେ;
କୁସୁମର ଆଶା ଭର ଏ ଚିତ୍ତେ
ମରଣକୁ ଭୁଲେଁ ଏ ରୂପ-ତୀର୍ଥେ,
ସ୍ୱଚ୍ଛ ପୂତ ପ୍ରୀତି-ସଙ୍ଗୀତେ
ଅମର ମନ୍ତ୍ର ସଙ୍ଗେ !

ବହ ଗୋ ବହ ତୋ ମନ୍ଦ ପବନ,
କୁହ ଗୋ କାନ୍ତ ଶୈଳ କାନନ,

ରହ ନା ନିମେଷେ ଭାସମାନ ତରୀ,
ଅକୂଳତା ଭରି ଯାଏଁ ମୁହଁ ମରି,
କ୍ଷୁଦ୍ର ଲହରୀ ତଟିନୀରେ ଡୋଳି,
ଛୁଟିଛ କା ଆଶେ ପାଲ୍ ଦେଇ ଖୋଲି ?

ମିଳିବ କି ତାର ଦେଖା ?
ପାଇଛ ତା ପ୍ରୀତି ଲେଖା ?
ଯିବ ମୁଁ ତା ଅଭିସାରେ !
ଡାକିଲେ ସେ'ବା ଅକୂଳକଣ୍ଠେ
ମଧୁ ମଳୟର ଦ୍ୱାରେ !

---

୯—ପଉଷ ପବନରେ ପାଦପ ଲତା ଆଜି ଝରିବ,
ଛାଡ଼ିଲେ ପୁରାତନ ତେସନେ ଛାଡ଼ିବି ମୁଁ ଗୋ ଗରବ;
ଆଶା ବାସନା ରାଜି
ସକଳ ତେଜି ଆଜି,

ତୁମରି ଦୁଆରେ ମୁଁ ଜୀର୍ଣ୍ଣ ତରୁସମ
ଏଡ଼ି ମୋହ ଭରମ ରହିବି,
(ତୁମ) ହୀରକ ରାଜସଭା ଆସନ ତଳେ ଉଭା
ହୋଇ ମୁଁ ବନ୍ଦନା ଗାଇବି ।
ତଟିନୀ ପୂଜିଲେ ସ୍ନାହାନ ସମାପନ
ସାଜି ସହଜେ ତୁମ ଧିଆନେ ନିମଗନ;
ସନ୍ଧ୍ୟାସମ ପ୍ରଭୁ ରହିବ ପଥ ଚାହିଁ
ଉଦାସୀ,
ଯେକାଳେ ହରଷରେ ପ୍ରତୀଚୀ ଗଗନରେ
ବିହଗେ ଯାଉଥିବେ ବାହାରି ।

'ଅସ୍ତ ତପନକୁ ଯେବେ କାଳେ ଲୁହି ଲୁହି,
ସ୍ୱପ୍ନଲୋକେ ତଥା ନାବିକ ଯିବ ବାହି,
ଗନ୍ଧ ଉପବନ୍ତ କୁସୁମ ସୁବାସିତ ଡୋଲାରେ;
ଅରତ ଲଗି ତବ ଅଶ୍ରୁ ପସରୁଚି ଖୋଲାରେ।

[୧୯୬୯]



## ଉଷସୀ

ପ୍ରଥମ ମିଳନବାସେ,
ମିଳିଲ ଯେ ଦାନ ହୃଦୟ ଦୁଆରେ
ଉଷସୀ ଅଲୋକ-ହାସେ ।

ଭାଲିଲ ତୁମେ ସେ ତରୁଣ ସପନ,
ସ୍ପନ୍ଦନ କର କୁସୁମ କାନନ,
ମୋ ମନ ବହନ, ବଢ଼ ଅଶୋଭନ—
ଚଳାବ ଅପଣା ପଥେ;
ନନ୍ଦନ ସୁର-ରଥେ ।

ଭାଲଥିଲ ତୁମେ ସନ୍ଧ୍ୟା ତାରକା,
ହେମ କୁରଙ୍ଗୀ ହୃଦୟର ଦକା,
କାଙ୍କ୍ଷା ତେଜ ଅସିଛ ଅଲକା
ଲଗାଇବ ବୋଲି ମାୟା;
ତୁମେ ମରୀଚିକା ଛାୟା !

ଅଥବା ପ୍ରଭାତ କାସାରେ କମଳ,
ଘନ ନୀଳକଇଁ କୁନ୍ଦ ଧବଳ,

ବିଜୁଳି ଛଟକେ କାନ୍ତି ଚପଳ—
ଯିବ ବୋଲି କ୍ଷଣେ ଅସ୍ତ,
ତରୁଣ ଜୀବନେ ନାନା ରୂପେ ଭବେ,
ଭ୍ରମର ଲୀଳା ସମସ୍ତ ।
ଅଞ୍ଜନ କଳା ଖଞ୍ଜନ ଆଖି,
ସ୍ୱପ୍ନ ତରୁଣେ ଦେଲ ଯେବେ ଡାକି
ଅନ୍ତର ମୋର ଗରଳକୁ ଘୃଣି
କହିଲ "ନାହିଁ ଗୋ ନାହିଁ"
"ଜୀବନର ଶେଷେ ନବ ଆୟୋଜନ
କର ଅବା କାହା ପାଇଁ ?"
ମନ୍ଦେ ହସିଲ, ଗୁହିଁଲ ଅଳ୍ପ,
ନନ୍ଦନ-ଫୁଲ-ବୃଷ୍ଟି-କଳ୍ପ,
ଅବାସେ ପ୍ରଭାତ ମନ୍ଦ ଆଲୋକ
ତ୍ରିଭୁବନ ଯାଏ ଛୁଇଁ,
ଚମକି ଉଠିଲି ଯେସନେ ତଟିନୀ
ସୁରଭି-ମଳୟ-ଛୁଇଁ ।

କହିଲି ମୁଁ "ନାହିଁ ନାହିଁ"
"ଯୌବନେ ଅଙ୍ଗ ଏ ପୀରତିର ଦୋଳ
ଲଗାଇବ କାହିଁପାଇଁ ?"
ନୀରବ ହେଲ ଟୋ ସ୍ୱପ୍ନି !
ଦୂର ଦେଶେ ଗଲ୍ ଯାଜୀ !

ବହିଲ ଜୀବନେ କର୍ମର ବାୟୁ
ସରିଲ ତରଣୀ ସରିଆସେ ଆୟୁ

ଦେଖିଲି ଅଶ୍ରୁ ଅଜନ୍ମ ଗ୍ରନ୍ଥୁଁ—
ତରୁଣ ଚନ୍ଦ୍ର ଗୋଟି,
କି ଅବା ତାରକା କୋଟି !

ମଳିନ ପଡ଼ିଲ ବାସନା-ବିଳାସ
ଛୁଇଁ ସକଳ ପୀରତର ପାଶ
ପରଶେ କାହିଁକି କରେ ଉପହାସ ?
କାହିଁ ପୂର୍ଣ୍ଣର ଛବି ?
ପଶ୍ଚିମେ ବୁଡ଼େ ରବି !

ଫେରିଲେ ବିହଗେ ବଳାକା ଅକାଶେ
ତଟିନୀ ତୀରେ ମୁଁ ରହିଛି କା ଅଶେ
ବାଜଗି ଶୂନ୍ୟ ମନ୍ଦର ପ୍ରାସେ
ପୂରିଛି, କାହିଁବା ମୁକ୍ତି ?
ଦେବ କିଏ ଆଜି ଯୁକ୍ତି ?

ଗୋଧୂଳି ଅଲୋକେ ପୁଣି ଛବି କାର
ଝଲଇ ? ନାହିଁ ଟୋ ତଳେତ ବିକାର,
ସୁନ୍ଦର ପୂତ ଶୁଭ୍ର ଅପାର
ବାସନା ବସନ ତେଜି
ପଦ ସଞ୍ଚାରେ ସଙ୍ଗୀତ ତୋଳି
ଅସକେ ନ ପାରେଁ ହେଜି !

ଦେଖିଲି ଏସନେ ପୂତ ମୂରତି
ଅନ୍ତରୁ ଅସେ ପୂର୍ଣ୍ଣ ଭକତି
ପୀରତି ଅଶ୍ରୁ ଶ୍ରଦ୍ଧା ପ୍ରଣତି
ଭରିଲେଁ ଅଜି ଦେବ ଥାଳି,
ବୃଥାଯାଏ ଦିନ ଭାଳି !

କହିଲ ହେ ଦେବୀ ଅପୂର୍ଣ୍ଣ ମୁହିଁ,
ପୁଣ୍ୟ ପରଶେ ଯାଅ ଥରେ ଛୁଇଁ,
ସୂର୍ଯ୍ୟ ସମାନ ତୁମେ ଅନ୍ଧ ଉଇଁ
ନାଶ ଗୋ କାଳିମା ରାଶି;
ପୁଣ୍ୟ-ପୀରତି-ସଙ୍ଗୀତ-ପରକାଶି ।

ଏ କି ଅଦ୍ଭୁତ ଦେଖେଁ ଆଖି ମେଲି,
ବିଶ୍ୱାସ ନୁହେଁ, ପାରୁ ନାହିଁ କଳି,
କିଏ ପୁଣି ତୁମେ ବିରଚିଲ କେଳି
କହ୍ନୁଁ ଏକି ନୂଆ କଥା?
ପୁଣି ଅଜାତ ମମତା !

ପରକାଶ ପୁଣି ବାସର ଯାମିନୀ ହାସ
ଅନ୍ଧକାର-ପ୍ରୀତି ଦୂର ଜୀବନର ତ୍ରାସ
ସେ ଦିନର ମାୟା ଆଜି ଜୀବନର ତ୍ୟାଗ !
ନୁଷାର ଶୁଭ୍ର ଅମୃତ ଅନୁରାଗ !

[୧୯୨୯]



## ଅଳକା

ଯେ ଦେଖେ ନୀଳ ତଟିନୀ ଜଳେ
ଯାଉଛୁ ଭାସି ସପନ ତରୀ;
ଯେ ଦେଖେ ରାତି ଲଜ୍ଜାବତୀ
ଦିବସ ଦେଖୁଁ ପଳାଏ ଥରି;
ପାଦପ ମୋହେ ଯେ ଦେଖେ ଲତା,
ନ ସହି ପ୍ରୀତି ସୋହାଗ ବ୍ୟଥା,

କୁସୁମ ଡାଳ ପଡ଼ଇ ଢଳ
ଫଗୁଣେ ନବ ମୀରଢ ପର
ଯାଉଛୁ ଭାସି ସପନ ତରୀ ।
ସେ ଦେଶେ ଭରି ମଲୟ ସ୍ରୋତ
ଫୁଲ ପରାଗ ଯାଏ ଗୋ ବୋଳି,
ପୀରଢ ଦୋଳେ କାମିନୀ ଜନ—
ଉଲ୍ଲାସେ ଯାଏ ଗୋ ଖୋଲି;
ଚାହିଁର ଲାଜେ ନୁଆଁଇ ଆଖି,
ବାନ୍ଧେ ପ୍ରିୟା ପୀରଢ ରାଖି,
ନିଶୂନ ଭୂଇଁ ପ୍ରଣୟୀ ଯାହିଁ
ଚୁମ୍ବନଟି ଯାଏ ଗୋ ତୋଳି,
ଉଲ୍ଲାସେ ଯାଏ ଟୁଗା ଖୋଲି ।
ମୁକୁଳ ମଦେ ମୁଗଧ ପିକ
ପ୍ରିୟାରେ ଡାକେ ଅକୁଳ ଭରେ,
ଚପଳଖେଳା ଖଞ୍ଜିଯାଏ
ଲଗାଇ ଭ୍ରମ ନୃତ୍ୟ କରେ;
ସ୍ନାନ୍ନାନରତା ନବ ତରୁଣୀ,
ଚକିତେ ବ୍ୟଥା ଲଭଇ ପୁଣି,
ଖସଇ ବାସ ସରମ-ହାସ
ଯାଏ ଗୋ ଭାସି ତଟିନୀ ଜଳେ ।
ପ୍ରିୟାରେ ଡାକେ ଅକୁଳ ଭରେ ।
ସେ ଦେଶେ ନୀଳ ଶଇଳ ମାଳ
ଆକାଶେ ତୋଳି ରହଇ ମଥା;
କୁଢ଼ଇ ରବ ଅକୁଳ କବ
ସେ ଦେଶେ ଯାହିଁ କହେ ତା କଥା ।

ସେ ଦେଖେ କ୍ଷୀଣ ମଳିନ ଶଶୀ,
ଶୂନ୍ୟ ଗଗନେ ଯାଏ ଗୋ ଲସି,
ସେ ଦେଖେ ପ୍ରିୟା ଅକୁଳ ହୁଏ
ମୋ ଲାଗି ତୁହି ତାଳଇ ବ୍ୟଥା
ଅଶ୍ରୁଭରେ ନୁଅାଁଏ ମଥା !
କାନନ ମୃଗ ତଟିନୀ ତୀରେ
ସଜଳ ନେତ୍ର କାହିଁକି ଥରେ ?
ଶୂନ୍ୟ କୁଞ୍ଜେ ବଧୂର ପ୍ରିୟା—
ମୃଗନୟନୁ ଅଶ୍ରୁ ଝରେ;
ମଳିନ ବେଶ ଶିଥିଳ କେଶ,
କରେ ବଳୟ ଦିଏ ଗୋ କ୍ଲେଶ,
ଫଗୁଣ ରସ ମନ ଉଦାସ !
ମରମ ବ୍ୟଥା ମରମେ ମରେ
ସେ ଦେଖ କବି ନୀରବେ ସ୍ମରେ ।
ବିଚ୍ଛେଦେ ତା ଅଳସ ଗତି
ମଳିନ ଅଖି ଅଶ୍ରୁଭରା,
କଣ୍ଟକିତ କୁସୁମ ସେଜ
ଶୂନ୍ୟ ଦିଶେ ଫଗୁଣ ଧରା !
ମୋ ରଜନୀ ଜାଗର ଜାଳି,
ଦିବସ ଜାଗେ ମିଳନ ଭାଳି,
ଲେଖଇ କବି ଅଶ୍ରୁରେ ତା
ସୁଦୂର ଦେଶେ କାବ୍ୟ ପରା ?
ଶୂନ୍ୟ ଦିଶେ ଫଗୁଣ ଧରା ।



## ଯକ୍ଷର ଶୋଚନା—

ସୁଦୂର ମୋର ଜନମ ଭୂଇଁ
ବରଜ ଅସି ଭରମେଁ ଦୂରେ,
ସେ କେଉଁ ମାୟା ହରିଣୀ ପଛେ—
ମରଣ ଅବା ! ନରତେ ଘୂରେଁ ।

ଶଇଳ ବନ ଶ୍ୟାମଳ ଲତା,
ନୀରବେ ଢାଳେ ପରାଣ ବ୍ୟଥା,
ଏ ଦେଶ ମରୁ ଜୀବନ ହୀନ !
ଏକାକୀ ମରେଁ ପରାଣ ପୂରେ ।୧।

ଜନମ ଭୂଇଁ ଘେରନ୍ତୁ ନଈ
ନଉକା କେତେ ଯାଏ ଟୋ ଭାସି,
ପ୍ରିୟ ଜନର ବାର୍ତ୍ତା ବହି
ବାରହେ ପୁଣି ଅଶ୍ରୁ ରାଶି ।
ସେ ଦେଶ ଛାଡ଼ି ଅଇଲି ମୁହିଁ,
ପୀରତି ହୀନ ଏ ମରୁ ଭୂଇଁ,
ଶୁଣିବ ପଦେ ସେନେହ କଥା
ଭରସା ନାହିଁ ଏ ଦେଶେ ଅସି ।୨।

ସନ୍ଧ୍ୟା ହେଲେ ବୁଡ଼ିବେ ରବି
ନିଶୂନ ହେବ ଆକାଶ ମଝି;
କୁଳ କାମିନୀ ତଟିନୀ ତୀରେ
ଫିବେଣି ଜଳେ କଳସୀ ବହି ।

ଅଳସ ଗତି ନୂପୁର ଧ୍ୱନି
ପରିହାସେ କି ହସେ ଅବନୀ
ଗୋପ ବାଳକ ମୁରଲୀ ଧ୍ୱନି
                    ଦୂର କାନନରୁଁ ଶୁଭଇ ତହିଁ;
ସଙ୍ଗିନୀଗଣ ଗହଳେ ପ୍ରିୟା
            ଫିରଣି ଜଳେ କଳସୀ ବହି । ୩ ।

ସ୍ୱୈରଂ ମଳୟ ଅଧୀରେ କେତେ
                    କାନନେ ବୁଲେ ଫିଙ୍ଗି ଧୂଳି,
ମର୍ମରବେ ପାଦପ ଲତା
                    ବହ୍ୱରେ ଗୀତେ ସକଳେ ଭୁଲି ।
କଳ୍ପିତ ମୋର ପରାଣି ଭାଷା,
ସବୁ ସାଧନା ସକଳ ଆଶା,
ଯେ ଦେଶ ମୋର ପରାଣ ପ୍ରିୟା
                    ମୋ ପଥ ଚାହିଁ ପଡ଼ଇ ଢଳି;
ଦିବସ ଯାଏ ମୋହନ ମାୟା—
                    ହରିଣୀ ପଛେ ଭରମେ ଭୁଲି । ୪ ।



## ବିରହ ପୂର୍ଣ୍ଣିମା

ଫଗୁଣ ନିଶାରେ          ଅନ୍ତର ପ୍ରିୟେ
        ରହିଥିଲି ମୁଁ ଗୋ ଚାହିଁ;
        ବିରହିଣୀ ତୁମ ପାଇଁ ।

ତୃଷିତ ବିକଳ ଚଉ ଅଧୀର,
ଖେଳିବାକୁ ତୁମ ସହିତେ ଅମ୍ବର,
ତୁହିଁ ନୟନରୁ          ଶୁଖିଗଲେ ନୀର
ପ୍ରୀତି ଋତୁ ଗଲା ପାହି;
ନୀରବେ ରହିଲି ତୁହିଁ ।

ପ୍ରଣୟିନୀ ତୁମେ          ଖେଳିଲେ ପ୍ରଣୟୀ
ଅକୂଳ ଜୋଛନା ମଧୁ,
ମଲ୍ଲି ବକୁଳ ରଜନୀଗନ୍ଧା
କାନେ କିବା ଦେଲେ କହୁ !
ନ ପାରିବା ଘରେ ରହି,
ମାଧବୀ କଣୀଥ ସହି,
ମହୁଆଳ କଲା ଦକ୍ଷିଣା ବାଆ
ଅନ୍ତରେ ଅଜା ବନ୍ଧି !

ହସିଲେ ଚନ୍ଦ୍ର, ହସିଲେ ତାରକା
କୁଳବଧୂ ଭୁଲିଗଲେ ଲାଜ ଦକା
ମର୍ତ୍ତ୍ୟ ହେଲା କି          ମିଳନ-ଅଳକା
ବିଚ୍ଛେଦ ତଳେ ନାହିଁ ।

ମୋ ହୃଦ ଯମୁନା ଶୂନ୍ୟ ପୁଳିନେ
ନ ବାଜିଲା ଥରେ ବେଣୁ,
କାଠର ପୀରତି ଯେଣୁ ! .
ଯୌବନ ମୋହେ ମତ୍ତ କାମିନୀ
ବୋଳିଲେ ଲୋଧ୍ର ରେଣୁ ।
ଗାଇଲେ ହରଷେ ଗୀତ,
ହାୟ ରସେ ପୁଲକିତ,

ପ୍ରୀତି ଆଶା ପ୍ରାଣେ ଭରି,
ଏକା ମୁଁ ରହିଲି ପଡ଼ି ।
× × ×

ପରାଣ ବନ୍ଧୁ ତୁମେ ମୋର ପରା ?
ସକଳରୁ ପ୍ରିୟ ଦୁଃଖ ପାଶୋରା ?
ପାଣେ ଥାଇ କପାଁ ଦିଅ ନାହିଁ ଧରା
ତୁମ ପ୍ରୀତି ଗୀତି ଗାଇ,
ଦିବା ନିଶି ରହେ ଚାହିଁ ।
× × ×

ପଡ଼ି ରହିଲା ମୋ ଦୀପ୍ତ ଅନ୍ତର
ହେ ମୋର ହୃଦୟ ରାଜ
ମଳିନ ହେଲା ମୋ କୁସୁମ ଶଯ୍ୟା
କର୍ପୁର-ଫୁଲ-ସାଜ !



## ମୂକ-ଭଗବାନ

ଜୀବନର ପଙ୍କେ ଯହିଁ ଦୀନ ଅକିଞ୍ଚନ
ଲଭନ୍ତି ଅହୁତି ତହିଁ ପାଉଛ ଆସନ—
ହେ ଦରିଦ୍ର ସଖା, ନିଖିଳର ରାଜେଶ୍ୱର !
କରିବାକୁ ଏ ଜୀବନ ସୁନ୍ଦର ଅମର ।
ବରି ନେଇଅଛ ଆପେ ଦୈନ୍ୟ ନିର୍ଯାତନ,
ସହସ୍ର ଲାଞ୍ଛନା ଭୋଗ କ୍ଷତ ଅନଶନ,

କରିଅଛ ଶୁଭ୍ର ଦେହ ଶୋଣିତ ଅପ୍ଲୁତ,
ମାନବ ଗରଳ ବର୍ଷି କରୁଛ ଅମୃତ !
ଅଶ୍ରୁ ଅନୁରକ୍ତ ତହିଁ ଫୁଟାଉଛ ହାସ,
ନୟନ ଅନ୍ଧାରୁ ତବ ଆଲୋକ ପ୍ରକାଶ !
ପ୍ରଭଞ୍ଜନ ଝଞ୍ଜାମେଳେ ହସ ତୁମେ ଶାନ୍ତ !
ମୃତ ଜୀବନର ଭସ୍ମେ ଅଚ୍ଛେଦ କାନ୍ତ !
ନିଖିଳ ବିଶ୍ୱର ପାପ ଭାରେ ନିଷ୍ପେଷିତ,
ମନ୍ଦ ହାସେ ଗାଉଅଛ ଅମର ସଙ୍ଗୀତ ।

—୨—

ଗାଉଛ ଦରିଦ୍ର ସୁରେ ନିଖିଳର ବ୍ୟଥା
ଭ୍ରାନ୍ତ ଏ ମାନବ ଲାଗି ଏତେହିଁ ମମତା !
ନୟନ ଯୁଗଳେ ବହିଯାଏ ବାରିଧାର
ଦନ୍ଦଦନ ବଢ଼େ ଯେତେ ଜୀବନର ଭାର ।
ସଭ୍ୟତାର କାଳ ସର୍ପ ଦଂଶେ ହୋଇ ଘୋର,
ପଡ଼େନାହିଁ ତୁମବ୍ୟଥା ଶ୍ରବଣେ କାହାର ।
ତୁମ ଅଶ୍ରୁଯୋଗେ ହୁଏ କୁଳିଶ ତରଳ
ମୂକ ପରବର୍ତ୍ତ ଫାଟି ପଡ଼େ ଅଶ୍ରୁ ଜଳ !
ହେ ମୂକ ପାଷାଣ ପ୍ରଭୁ ଶିର ଅଚଳ !
ହେ ଲାଞ୍ଛିତ ନିଷ୍ପେଷିତ ହେ ଶିବ ମଙ୍ଗଳ !
ତୁମରି ଶୋଣିତ ଅଶ୍ରୁ ଦାନ କରି ପ୍ରାଣ
ପରଶିଛୁ, କି ଆଦେଶ ଗାଇବାକୁ ଗାନ
ନତଶିରେ ଶ୍ରୀ ପଦ୍ମରେ ମାଗେ ଆଜି ଭିକ୍ଷା
ଦାଅ ସେ ଗୈରିକ ବାସ ଦାରିଦ୍ର୍ୟର ଦୀକ୍ଷା ।



# ସେନା-ସଙ୍ଗୀତ

ନିର୍ଭୀକ କରୁଁ ଅଟ୍ଟହାସ୍ୟ
　　　ମୃତ୍ୟୁକୁ କରୁଁ ଫୁତ୍କାର,
ବିଶ୍ୱନାଥର ସୈନିକ ଆମେ,
　　　ଦୁର୍ଜ୍ଜୟ ଆମେ ଦୁର୍ବାର !

ଦୁଃଖ କି ଭୟ ଆମେ ବୈରାଗୀ,
ସତ୍ୟ ପରାଣେ ରହୁଅଛୁ ଜାଗି,
ଶୋଚନା ଦୁଃଖ ହେବ କାହାଲାଗି ?
　　　ମିଥ୍ୟାର ହାତୁ ନିସ୍ତାର !
　　　ମୃତ୍ୟୁକୁ କର ଫୁତ୍କାର ।

ଦୀପ୍ତ ଆମର ନୟନର ତେଜେ
　　　ଶୃଙ୍ଖଳ ପଡ଼େ ଖସି,
ଲୁଚଇ ମୃତ୍ୟୁ ଅନ୍ଧକାର
　　　ଉଠଇ ଉଠିଲେ ହସି,
ଆମ ପଦତଳେ କାନ୍ଦେ ଧରଣୀ
　　　ପାଣ୍ଡୁର ଦିଶେ ନଭ,
ନିର୍ଜୀବ ମୋହ ଶାନ୍ତିରେ ଅଣୁ
　　　ଧ୍ୱଂସର ଉପଦ୍ରବ ।

　　　ଉଠେ ଉଠରେ ହସି !
　　　ଶୃଙ୍ଖଳ ପଡ଼ୁ ଖସି !
ଡାକେ ଭୈରବୀ ଶ୍ମଶାନ ଚଣ୍ଡୀ
　　　ମୌନ ଶୋହେ କି ବସି ?

ଅଜ ଅନ୍ତରେ ପ୍ରଳୟ ଉଲ୍ଲାସ !
ଅଙ୍ଗରେ ଜଡ଼ତା ଦିଏ ବଡ଼ ତ୍ରାସ !
ଅଜ ମରଣର ମହା ଆନନ୍ଦ
ହୃଦୟ ତନ୍ତ୍ରେ ଝଙ୍କାର;
ମୃତ୍ୟୁକୁ କର ଫୁତ୍କାର !

ଅଜ, ମୁକ୍ତିର ଗୀତ ବୋଲ;
ଖୋଲ, ରୁଦ୍ଧ ଦୁଆର ଖୋଲ;
ଆସରେ-ମୃତ୍ୟୁ ପଥ ସୈନିକ
ଅନ୍ତମେ କର କୋଳ ।

ଆମେ, ଅମର ଅଜୟ ବୀର;
ନୁହେଁ, ନତ ଉନ୍ନତ ଶିର;
ରଣ, ଭୂମିରେ ସଦା ଆନନ୍ଦ !
ସଦା, ମିଥ୍ୟା ସହିତେ ଦ୍ୱନ୍ଦ !
ନିଷ୍ପେଷିତର ଧଟଙ୍କେ ଆମର
ଶୋଣିତ ଅହ୍ମୂତ ପର !'

ଆମର ରକ୍ତେ ଜୀବନ ବିକାଶ
ଶାନ୍ତ ତପତ ଧାର ।
ଦୁଃଖ କ ଭାଇ ଆମେ ବୈରାଗୀ,
ଘାତକକୁ ଡାକ ଦେଇ ଯାଉ ଦାଗି,
ଛନ୍ଦୁ ଗଳାରେ ମୃତ୍ୟୁର ଫାଶ
ଶାନ୍ତ ହେଉରେ ସଂସାର;
'ନିର୍ଭୟ ଆମେ ଆମେ ଅମୃତ !
ଦୁର୍ଜୟ ଆମେ ଦୁର୍ବାର !



## ସାଥି

ମୋର ଜୀବନର ସାଥି !
ଅନ୍ତରେ ଜାଳି       ପୀରତି ପ୍ରଦୀପ
ଅଣି ଉତ୍ସବ ରାତି !
ତୁମେ, ନନ୍ଦନ ବନ ମଧୁ ,
ତୁମେ, ନୁହସି ତରୁଣୀ ବଧୂ ,
ତୁମେ, ପବନ ଛିର ଶାନ୍ତ,
ମୁଁ ଗୋ, କ୍ଷୁବ୍ଧ ଅକୂଳ ପାନ୍ଥ !
ତୁମେ, ସୁନ୍ଦର ପୂତ କାନ୍ତ !
ତୁମେ, ହୃଦୟର ଜ୍ୟୋତି ଅରୁଣ ସମାନ
ରହେଁ, ମୁଗ୍‌ଧେ ମୁଁ ଅବଶ୍ରାନ୍ତ !

ତୁମେ, ସନ୍ଧ୍ୟା ଗଗନ ତାରା ;
ତୁମେ, ଉଷାର ପିୟୂଷ ଧାରା,
ତୁମେ, ଉନ୍ମାଦ ମଳୟର,
ତୁମେ, ଶାନ୍ତ ଶାରଦ-ଚର;
ତୁମେ, ମୁକ୍ତ ଆକାଶ ନୀଳ,
ତୁମେ, ତଟିନୀ ଗୋ ଅନାବିଲ,
ମୁଁ ଗୋ, ଅଞ୍ଚଳ ପାତି   ପୀରତି ଦୁଆରେ
ଭିକ୍ଷୁକ ବସେଁ ଚିର !
ତୁମ, ଆନନ୍ଦେ ଉଠେଁ ମାତି.
ଅଟଗୋ, ଚିର ଜୀବନର ସାଥି !

ତୁମେ, ଅନାଦ୍ଧ ସୁର ଧ୍ୱନି,
ଶତ, ଲୀଳାର ଆଧାର ଗୁଣୀ,
ତୁମେ, ତରୁଣ କଳାର ସ୍ୱପ୍ନ,
ତୁମେ, ଅଜ୍ଞ ଅଲୋକ ରତ୍ନ,
ତୁମେ, ଭଙ୍ଗୀ ଗୁଚ୍ଛ ପୂର୍ଣ୍ଣ,
ମୁଗୋ, ବାସନାରେ ସଦା କ୍ଷୁବ୍ଧ,
ତୁମେ, ସନ୍ଧ୍ୟା ସମାନ ଶାନ୍ତ ଉଦାର,
ମନ୍ଦିର ମୋର ଶୂନ୍ୟ !
ତୁମେ, ଗାଳ ଅନ୍ତର ପୁଣ୍ୟ !
ଅଗୋ, ତରୁଣ-କବିର-ଜାୟା,
ଶତ, ସୃଷ୍ଟିରେ ତବ ମାୟା,
ତୁମେ, ନାନାରୂପେ ରଙ୍ଗେ ଖେଳ,
କେତେ, ବିରହ, ହୃଦୟ ମେଳ,
ମୁଗୋ, ଦେଖିଛୁ ତ କୋଟି ବେଶେ,
ଦୂର, ପର୍ବତ ମରୁଦେଶେ,
କେବେ, ବୈଶାଖ ନଦୀଧାରେ,
କେବେ, ସନ୍ଧ୍ୟା ଗୋଧୂଳି ପାରେ,
ତୁମେ, କେବେ ନବବଧୂ କେବେ ପ୍ରଣୟିନୀ
କେବେ ଚଳ ଅଭିସାରେ !
କେବେ, କକ୍ଷେ କଳସୀ ଧରି
ହସି, ଜଳ ତୁଲେ ଯାଅ ସରି,
ମୃଦୁ, ହାସେ କଟାକ୍ଷ ହାଣି;
ନାଅ, ପଲ୍ଲୀବାସିନୀ ପାଣି
ତରୁଣ ହୃଦୟେ ବାସନା ବିକାର
ଜାଳଯାଅ ଜାଣି ଜାଣି !

ତୁମେ, ଚପଳା ଆଲୋକ ଜାଳ,
କେଉଁ, ଶୂନ୍ୟେ ମିଶ ଗୋ ଆଳି;
କେଉଁ ଶ୍ରାବଣ ବାଦଲେ ମିଶ,
କବି, ଗାଇ ମରେ ଅହର୍ନିଶ;
ତୁମେ, ନୀଳଧାନ କ୍ଷେତେ ଲହରୀ ବିଳାସ
ଦୋଳି ଖୋଜ କେଉଁ ଦିଶ ।

ତୁମେ, ଲକ୍ଷ୍ମୀ ଗୃହିଣୀ ସତୀ,
ତୁମେ, ସନ୍ଧ୍ୟାରେ ଜାଳ ବତି;
ଆଣି, ସୃଷ୍ଟିର ଶିବ ପ୍ରିୟ,
ତୁମ, ଆଲୋକ ସ୍ପର୍ଶଦିଅ !
ତୁମେ, ତ୍ୟାଗ ଦୀକ୍ଷା ଧରି,
ପ୍ରେମେ, ଦିଅ ଗୋ ଭୁବନ ଭରି;
ସୃଷ୍ଟିରେ ପର କର ଆପଣାର,
ଚିର ପ୍ରିୟ ସୁନ୍ଦର !

ତୁମେ, ଦୁଃଖରେ ଢାଳ ଲୁହ,
ଢାଳ, ପରାଣ-ପୀରତି-ସୁଅ
ପ୍ରେମେ, ଆପଣା ପରକୁ ଭୁଲ,
ସବୁ, କର ଏକ ସମତୁଲ,
କବି, ମୁଗ୍ଧ ନୟନେ ଚାହେଁ,
ପ୍ରାଣ, ମୂର୍ତ୍ତ ଗୀତଟି ଗାଏ !
ନାହିଁ, ବାସନାର ପୀଡ଼ା ଆଉ,
ତୁମ, ଶିର ସିନ୍ଦୂର ଚାହୁଁ !
ଶାନ୍ତ ପରାଣ ପୀରତି ପ୍ରଥମ—
ଆସାର କାହାର ଲଭି,
ଜୀଇ ଉଠେ ପୁଣି କବି !

କ୍ଷଣେ, ସୁନ୍ଦର ଦାଣେ ସବୁ,
ଅହା, ଚିର ଜୀବନର ପ୍ରଭୁ,
ମୋର ପ୍ରାଣ ମନ୍ଦରେ ସ୍ଥିତ;
ଅଜ, କି ଅଲେକେ ଅଲୋକିତ !
ଜୀବନର ଶେଷେ ଉଜ୍ଜ୍ୱଳ ତାରା
ଶୁଣେଇଁ ତୁମର ଗୀତ !

ତୁମେ, 'ଉଷସୀ ମଦେ ହସ,
ତୁମେ, ତାଲ ପୂର୍ଣ୍ଣର ରସ,
ସେହ୍ନ, ଅମର ରସେ ମୋ ଭ୍ରାନ୍ତ
କ୍ଷଣେ, ନିଭଇ ଶାନ୍ତ ! ଶାନ୍ତ !
ଅମର ସୃଷ୍ଟି ମଧ୍ୟେ ବିରାଜେ
ମୀରଭ ବିଜୟ ରଥ !
ମୋର, ଚିର ଜୀବନର ସାଥି ।

[୧୯୩୦]



## ଶେଷ ପୃଷ୍ଠା

ଜୀବନ ସୀମା ଶେଷେ ଅସନ ପାର
ବସିଛୁ ଯେ ମୃତ୍ୟୁ ନିତ୍ୟକାଳ,
ଜୀବନ ଚିରନ୍ତ ନାଟ୍ୟ ସାର
ବୁଣଇ ପୁଣି ହସି ସ୍ୱପ୍ନ-ଜାଲ ।
ତାହାର ନିର୍ଦ୍ଦେଶେ ମୁଁ ଗାଉଛୁ ଗୀତ
ତାହାର ପଦେ ମୁହିଁ ଟାଳଛୁ ଚିତ ।

ତାହାର ନିଦେଶେ ମୋ ଶେଷ ଅଶେଷ
ଜୀବନ ନଦୀ ମୋର ବହଇ,
ତାହାର ନିଦେଶେ ମୁଁ ମିଥ୍ୟା ଭୁଲେ ଲଢ଼ି
ଅଶେଷ ଯନ୍ତ୍ରଣା ସହଇ ।
ତାହାର ପ୍ରୀତି କାଳ-ଯୋଗେ ମୁଁ ଲେଖେଁ ନିତି
ଜୀବନ କାବ୍ୟର ପୃଷ୍ଠା,
ଶତ ହରଷ ବ୍ୟଥା ପୀରତି ମାଦକତା
ବନ୍ଦୀ ମୁଁ ସେ ମୋ ଗୀତ ସ୍ରଷ୍ଟା !
ଜୀବନ ପ୍ରିୟତମ ! ପ୍ରଣୟୀ ନିରମମ !
ଏ ଗୀତ ଶେଷ କେବେ କାହିଁବା ?

ନ ଦେଲୁ ଦରଶନ ପୀରତି ବରତନ ?
ନ ଦେଲୁ ତୋ ଅଲୋକ ନାହିଁ ବା ।
ନୟନ ଜଳ ବଳେ ବୋଳଏଁ କବ
ସୁଖ ଦୁଃଖର କେତେ ଲେଖେଁ ମୁଁ ଛବ ।
ସକଳ ଦ୍ରଷ୍ଟା ତୁ ସକଳ ସ୍ରଷ୍ଟା ତୁ
ସକଳ କରୁ ତୁହି ବିଧାନ
ତୋହର ଇଙ୍ଗିତ ଲଭି ମୁଁ ପୁଲକିତ
ଏ ଗୀତ କରେଁ ନିତି ଭିଆଣ ।
ସାରିଲେ ଏ ମୋ ଗୀତ ସରଇ ନାହିଁ;
ମୋ ମୁଖେ ତୋର ଗୀତ ତୋହର ପାଇଁ !
ମୋ ମୁଖେ ତୁହିଁ ଶୁଣି ତୋହର୍ ଗାଥା
ଅରୂପ ତୋହ ରୂପ ବନ୍ଦନା,
ମୁଁ ତୋର ଶରଦାସ ମୋ ତୁଲେ ତୋର ସ୍ୱର,
ତୋ ଜୀବ ଲୀଳାର ମୁଁ ମୂର୍ଚ୍ଛନା ।

ଗାଇବି ଗାଇବି ମୁଁ ପ୍ରଣୟ ଦାସ ତୋର
କଙ୍କର ମୁଁ ତୋର ଚରଣେ;
ଚାହିଁବି ତୋର ମୁଖ ଧାଇ ଭୁଲିବି ଦୁଃଖ
ଜୀବନେ ପୁଣି ମୋର ମରଣେ ।
[ ୧୯୩୮ ]



# ଚିର ନବୀନ-ତେ

ଛାଡଗଲେଣି ମୋର ସକଳ ପ୍ରିୟ
ପରାଣପୁର କରି ଶୂନ୍ୟ ।
ନବୀନ ପୁରାତନ ଅଛନ୍ତି ନାମଗଣ
କାହିଁକି ହେବି ଅବା କ୍ଷୁଣ୍ଣ ?
ଯା ଲଗି ଗାଉଥିଲି ସନ୍ଧ୍ୟାକାଶେ ଚାହିଁ
ମୁଗ୍ଧ ନୟନରେ, ସେ ଆଜ ପାଶେ ନାହିଁ,
ନ ଆସେ ଥରେ ଭୁଲି ନ ଚାହେଁ ଥରେ ଫେରି
ଏ ପଥେ ଗଲେ କେବେ ଉଦାସେ;
ବସିଲେ ଚାହିଁ ଚାହିଁ ମୋ ଗୀତ ଯାଏ ପାହି
ମୋ ଗୀତ ମନେ ମରେ ହତାଶେ ।
ଜାଣିଛୁ ନାନାଭାବେ ନାଚୁଛି ମୋ ପ୍ରାଣ
ଜାଇଁଛ ଜୀବନର ସରିତା;
ଗାଇଛୁ ସୁଖେ ଦୁଃଖେ ପରଶ ଲଭି ବୁକେ
ବିରହ ମିଳନର କବିତା ।
ଜୀବନେ କେତେ ରୂପେ ଦେଇଛ ପରିଚୟ,
ଛନ୍ଦେ ଅନ୍ତରାଳେ କରିଛ ମୋତେ ଜୟ,

ନେଇଛ ଅବହେଳେ ଦେଇଛ ଅକାତରେ
ରଚିଛ ସ୍ମୃତି ପୁରେ ସମାଧି,
ଜଞ୍ଜାଳ ଭୂମେ ପୁଣି ଫୁଟାଇଛ କମଳ
ଜୀବନ ସୂର୍ଯ୍ୟ ହେ ଅନାଦି !

ବାଦଲ ଭେଦ ତୁମେ ଆଲୋକ ପରକାଶ !
ନିରାଶ ଅଧରେ ମୋ ଫୁଟି ଉଠିଛ ହାସ,
ଏସନ ପ୍ରିୟ ଥାଉଁ କି ଦୁଃଖ ମୋର ଆଉ ?
ଗାଉଛି ଗାଇବି ମୁଁ ତା ଲାଗି,
ସକଳ ବନ୍ଧନେ ମୋହ ଭରମ ପ୍ରେମେ
ସକଳ ଜ୍ଞାନେ ରହେ ସେ ଜାଗି ।
ତାହାର ଇଚ୍ଛାରେ ଗଗନେ ଗ୍ରହ ତାରା
ସଜୀବ ଅଜୀବ ଯେ ଭରମେ,
ଆଲୋକେ ଫୁଲ ଫୁଟେ ମୋହ ତମିର ତୁଟେ,
ପ୍ରଣୟ ପଥେ ଗୃହେଁ ସରମେ ।

ତା ଦେହେ ମିଶିଯାଏ ସକଳ ପୁରାତନ,
ନବୀନ ଭାବେ ପୁଣି ଦିଏ ସେ ଦରଶନ,
ସକଳ ସୀମା ପାରେ ଯୋଜନା କରେ ପଦ
ସବୁରି ନିୟାମକ କବି ସେ,
ମୋ କ୍ଷୀଣ ଭାଷାରେ ତା କାବ୍ୟ ପରକାଶ
ଜ୍ଞାନ ଭାବର ଅନୁଭବୀ ସେ ।
ପୁରାଣ ପ୍ରଣୟ ସେ ନ ଗୃହେଁ ଥରେ
ନ ଗୃହଁ, ନାହିଁ ମୋର ଶୋଚନା,
ନବୀନ ଅତିଥି ମୋ ମନ୍ଦହାସେ କହେ
"କାନନ ଫୁଲେ ହାର ରଚ ନା !"

ମୋ ଜୀବନ ଯମୁନା ପୁଳିନେ ରହି ରହି,
ବଜାଏ ବଇଁଶୀ ସେ ପରାଣ ଦିଏ ଦହି,
ଜୋଛନା-ପାରାବାରେ କୁଳିଶ ପ୍ରାଣଗଳେ
ଜୀବନ କୁଞ୍ଜେ ମୋ ରସ ସେ;
ତା ଲଗି ସିନା ନିତ ଏ ବାତାୟନ ପାଶେ
ଜାଗର ଝାଳେ ବସି ହତାଶେ ।

ତା ପଦେ ଅରପେ ମୋ ବିଫଳ ଗୀତ,
ନ ବିକୁ ଆନ ହାଟେ ନାହିଁ ମୋ ଭୀତି !
ଯେ ମାଳା ରଚିଛି ମୁଁ ଅଳସେ ବସି ବସି
ଶୁଖି ସେ କାନନେ ମୋ ଶୋଚନା ନାହିଁ
ମୋ ହୃଦ ପ୍ରେମ ନଈ ମରୁରେ ହେଉ ଦହି
ସକଳ ଲୀଳା ଏ ମୋ ତାହାର ପାଇଁ ।



## ବୁଦ୍ଧ ବନ୍ଦନା

ପାପ ତାପ କଳୁଷ ପ୍ରାଣେ ବରିବାକୁ ତବ ଦୀକ୍ଷା,
ଶ୍ରାନ୍ତ କ୍ଷୁବ୍ଧ ଭିକ୍ଷୁ ଆସିଛୁ ଦିଅ ହେ ମୁକ୍ତିଭିକ୍ଷା !
ମୁକ୍ତିକର ହେ ମୁକ୍ତ ମୋ ମନ ମନ୍ଦର ଅବରୁଦ୍ଧ,
ବୁଦ୍ଧ ହେ ବୁଦ୍ଧ ହେ ଅବିନଶ୍ୱର ଶୁଦ୍ଧ ! । ୧ ।
ସ୍ପର୍ଶେ ତବ ଚିର ଅମୃତ ନିର୍ଜୀବ ପ୍ରାଣେ ବର୍ଷ,
ତମିସ୍ରାବୃତ ଚିତ ମନ୍ଦିରେ ଢାଳ ହେ ଅଲୋକ ହର୍ଷ;
ଜୀବନ ଅରବିନ୍ଦ ହେ ମମ ମୁଦ୍ରିତ ପାପ କ୍ଷୁବ୍ଧ,
ବୁଦ୍ଧ ହେ ବୁଦ୍ଧ ହେ କର ହେ ମୁକ୍ତ ଶୁଦ୍ଧ ! ୨ ।

ଅନ୍ତରେ ମୋର ଅଶ୍ରୁ ବହୁଛି ସକଳ ଜୀବନ ବ୍ୟାପି,
କ୍ଷମର ପଯୂର ବନ୍ଦନାଲାଗି ବୁଦ୍ଧ ହେ ଶର ପାପୀ;
ତବ ସୁନ୍ଦର ଚରଣ କମଳେ ମୋ ଚିତ୍ତ-ଭୃଙ୍ଗ ଲୁବ୍ଧ,
ବିଶ୍ୱାସ ଦିଅ ଦିଅ ହେ ଭରସା ଚିର ଅମୃତ ଶୁଦ୍ଧ ! । ୩ ।
ଜୀବନର ଶତ ସଂଗ୍ରାମେ ପ୍ରଭୁ ଦେଇଛି ଛନ୍ଦଭଙ୍ଗ,
ଦେଖିଛି ଶ୍ରାନ୍ତ ନର୍କର ଜ୍ୱାଳା ବାସନା-ମୋହ-ରଙ୍ଗ,
ଧର୍ମ ଶରଣ ସଂଘ ଶରଣ ଶରଣ ହେ ମୋର ବୁଦ୍ଧ !
ଅନ୍ତିମ ହୃଦେ ସ୍ଥାନ ଦିଅ ହେ ଅବିନଶ୍ୱର ଶୁଦ୍ଧ ! । ୪ ।
ନିର୍ଯାତିତ ମୋ ନୟନ ସଲିଳେ ଅଦେଶ ଧୋଇବି ପାଦ,
ଭୁଲିବି ଚରଣ-ଆଶ୍ରୟ ଲଭି ଅଜ୍ଞାନ ପରମାଦ;
ଭୁଲିବି ଦୈନ୍ୟ ଅଧି ବ୍ୟାଧି ଅନ୍ତର ସମ୍ବନ୍ଧ,
ଚରଣ ପଦ୍ମେ ସ୍ଥାନ ଦିଅ ହେ ଅବିନଶ୍ୱର ଶୁଦ୍ଧ ! । ୫ ।
କରୁଣା ସ୍ୱର୍ଗ ଗଙ୍ଗା ପ୍ଲାବନେ ମୁକ୍ତ କଲ ହେ ପାପ,
ଖଣ୍ଡିଲ ମୋହ କଳୁଷ ଦୁଃଖ ବିଶ୍ୱର ଅଭିଶାପ;
ଆଶ୍ରୟ ଦେଲ ଅମୃତ ଦେଲ ହେ ଶିବ ସତ୍ୟ ମୁଗ୍ଧ !
ଅସିଛି ଚରଣ ଲୁବ୍ଧ ଭିକ୍ଷୁ ଆଶ୍ରୟ ଦିଅ ଶୁଦ୍ଧ ! । ୬ ।
ଲୁପ୍ତ ହେଉ ହେ ଏ ଦେହ ଆତ୍ମା ଉଜ୍ଜ୍ୱଳ କର ସ୍ପର୍ଶେ,
ସୁନ୍ଦର ପୂତ ଶୁଦ୍ଧ କର ହେ ଧରମ-ପୁଣ୍ୟ-ଦର୍ଶେ;
ଦିଅ ହେ ଭିକ୍ଷୁ ଗୈରିକ ବାସ ସଂଘ ପୁଣ୍ୟାନୁବଦ୍ଧ,
ବୁଦ୍ଧ ହେ ବୁଦ୍ଧ ହେ ଅବିନଶ୍ୱର ଶୁଦ୍ଧ ! । ୭ ।



## ଯାତ୍ରା ସଙ୍ଗୀତ

ଜୀବନପ୍ରାନ୍ତ ମୋ ଭରିଛ କେତେ ମତେ
ନ ଦେଲ କିଛି ବୋଲି କହିବ କି ଦେହ ଅନ୍ତ ?
ଜୀବନ ପ୍ରିୟତମ ହରିଛ ମୋ ଭରମ
ତରଣୀ ମୋର ଭବ ସାଗରେ ବହିଯାଉ ।
କୂଳର ଜନପ୍ରାଣୀ କେତେ ମିଳାଅ ଆଣି
ନୟନ ପଲକରେ ଲୁଚୁଅ ଜାଣି ଜାଣି,
ବୃଥା ମୁଁ ଅଭିମାନୀ ହୃଦେ ଧରିଲି ଠାଣି
ମରତ ପ୍ରବାସୀ ମୁଁ ନ ଜାଣି ଆଣେ ଦାଉ ।୧।

ମାନସ ହଂସ ମୁଁ ମାନସେ ଯିବ ଉଡ଼ି
ମୋ ଦୋଷେ ପଥ ହୁଡ଼ି ଭରମେ ଅବିରତ,
ଅଳପ ତୃଷା କ୍ଷୁଧା ଲଭି ତୁମରି ସୁଧା
ତୃପତ ହେଲି, ତେବେ ଲୋଡ଼ଇଁ ଏ ମରତ !
ନିଜ ବାସନା ଜାଲେ ବିକଳ ବିଧୃତ,
ତମିର ଅଙ୍କନେ ମିଳେ କି ଅମୃତ ?
ଛାଡ଼ିବ ଦୂରେ ଯିବ ପାରାବାରେ ଭାସିବ
ଲଙ୍ଘି ହିମଗିରି ଯିବ ଗୋ ବେଳ ଥାଉଁ । ୨ ।

ଦେଇଛ ପ୍ରିୟା ପ୍ରାଣେ ଅମର ପ୍ରୀତି ଭରି
ମୋ ଶିଶୁ ବଦନେ ଅମର ମୋର ଆଶା,
ପ୍ରଭାତ ସନ୍ଧ୍ୟାରେ ଖେଳାଇ ରୂପ ତେଜ
ବିକଳ କଣ୍ଠେ ମୋ ଫୁଟାଇଛ ତ ଭାଷା;
ଗାଇବ ବନ୍ଦୀ ମୁଁ ଚରଣ ବନ୍ଦନା,
ସେଲଗି ଏ ବୀଣାରେ ଦେଇଛ ମୂର୍ଚ୍ଛନା,

ସେ ସୁଖ କରି ହେଲା ଲଗାଇଲି ମୁଁ ଖେଳା

ମିଳନ ମଧୁରାତି ପାହିଲା ସ୍ୱହ୍ନ ସ୍ୱହ୍ନ ।

ମିଥ୍ୟା ବିପଣୀରେ ବଣିକ ମରଣ ସେ

ନ ଦେଇ ଚାଲିଲା ଯାହା କଲି ମୋ ମଣି ଭାଜି ! ୩ ।

ପଡ଼ିଛି ତଳୁ ମୁଁ ଗୋ ପଳାତ ମୋ ପଥର

ଜୀବଣ ମରଣରେ ଝରନ୍ତି ଅକାଳରେ,

ନାହିଁତ ତେବେ ଭଲେ ଶୋଚନା ଖେଦ ମୋର

ହୃଦୟମଣି ମୋର ସାଗର ଅତଳରେ;

ପବଣି କୁଞ୍ଜେ ଗୋ ତାର ମୁରଲୀ ଧ୍ୱନି !

ପବଣି-ଅବନେ ଗୋ ତା ଶୁଭ ଆଗମନୀ,

ଜୀବନେ ଦେବା ନେବା ଭିଆଣ ସବୁ ତାର

ସେ ମହାଦାନୀ ହସ୍ତେ ପରଶେ ଦେଖିନାହଁ ?

ତା ପରଶେ ପଡ଼ିଛି ଜୀର୍ଣ୍ଣ ଜୀବତରୁ

ପଲ୍ଲବିତ ଅହା ଶୋଚନା କିବା ଆଜି ? ୪ ।

ଭୁଲିରେ ଭୁଲି ମନ ନିତ୍ୟ ମଧୁବନେ

ଦେଖିବୁ ପ୍ରିୟରାସ, ଅଦୂରେ ଗୋଲକରେ;

ଅଦୂର ପଥେ ଆଜ ମିଳନ ତାର ସାଥେ

ବିଜୟ ରଥେ ତୋର ଜୀବନ ଅଲୋକରେ !

ଯାନିପଥ ତୋର ପଲକେ ହେବ ଶେଷ,

ଶେଷରେ ସନ୍ଦେହ ସକଳ ତୋର କ୍ଲେଶ,

ଧନ୍ୟ ହେବୁ ଆଜ ପୁଣ୍ୟ ଦରଶନେ,

ମୁକ୍ତ ସବୁ ପାପ ଦୁଷ୍କୃତର ସ୍ୱହ୍ନ !

ଜୀବନ ଦେବତା ମୋ ଜୀବନ ପଥେ ବାଙ୍କେ,

ତରଣୀ ମୋର ତାର ସାଟରେ ବହିଯାଉ ! । ୫ ।

[ ୧୯୩୧ ]



# ବର୍ଷା ବରଣ

ସ୍ୱଚ୍ଛ ଗୁରଜନ କରି ଅସ !
ଘନ ଆସ !
ନଅ ନଅ ବର୍ଷର ପ୍ରାସ,
ଘନ ଆସ !

ଉଚ୍ଛଳୁ ଉଚ୍ଛଳି ଉଡ଼ାଇ,
ବିଦ୍ୟୁତ କୌତୁକ ଲଗାଇ,
ସ୍ୱପ୍ନ ପୁଲକ ସୁଖ ଜଗାଇ,
ନିର୍ଜୀବ ମୃତ ଦୁଃଖ ନାଶ ।
ଘନ ଆସ । ୧ ।

ତପ୍ତ ବିକଳ ଏଇ ଧରଣୀ,
ଶୂନ୍ୟ ବିଜନ ଦୂର ଶରଣି,
ଶ୍ରୀହୀନ ବିବସ କେ ରମଣୀ,
ଆଗମନ ପଥେ ମେଲ୍ ବାସ;
ଡାକେ ଆସ !
ଘନ ଆସ ! ୨।

ଆସ ଆସ ନକର ନିରାଶ
ରୌଦ୍ରଗ ଅବରି ଅକାଶ,
ଅମୃତ ଜୀବନ ପ୍ରକାଶ,
ଅମୃତ ଜୀବନର ଉତ୍ସ !
ଘନ ଆସ !। ୩।

ଅତ୍ରୁର ତଟିନୀ ତାକେ ଶୁଷ୍କ,
ଡାକେ ଗିରି କାନ୍ତାର ରୁକ୍ଷ,
ହର ଘନ ଧରଣୀର ଦୁଃଖ,
ଡାକେ ତରୁ ପଲ୍ଲବ ଘାସ,

ଘନ ଅସ ! ।୪।

ଡାକେ ଅଙ୍କ ନିର୍ଜୀବ କବି ଦେହ,
ନିର୍ଜୀବ ଦୁଃଖ ଅନୁଭବୀ ହେ,
ଚିର ନବ ନୃତ୍ୟର ଛବି ହେ,
କାହିଁ ନବ ନୃତ୍ୟ ସେ ରାସ,

ଘନ ଅସ !୫।

ଘନ ଉଷ୍ଣ ଶୀତ ପବନେ,
ଅସ ମେଲି କ୍ଷିପ୍ର ସେ ଚରଣେ,
କାନ୍ତ ସ୍ନିଗ୍ଧ ଶ୍ୟାମ ବରଣେ;
ଦୁଃଖର ନାହିଁ ଅବକାଶ,

ଘନ ଅସ !୬।

[୧୯୩୧]



# ନିଶୀଥ-ଯାତ୍ରୀ—

ସେ ଯେ, ଡାକଗଲା କବା ଗୀତେ !
ଅହା ନିଶବଦ ସେ ନିଶୀଥେ !

ଅନ୍ଧାର ରାତ ଅସୁଥିଲା ପାହି,
ଚମକ ଉଠିଲି ସେ ପରଶ ପାଇ,

କବା, ବ୍ୟଥା ରଖିଗଲ ଗତେ !
ଅହା ନିଶବଦ ସେ ନିଶୀଥେ ।

ସେ ଯେ କାହା ସନ୍ଧାନେ କି ବେଦନା ଭରି
ଗ୍ଭଲିଥିଲ ଗାଇ ଗାଇ
ଶୁଣିଛ କି ତାର ସଙ୍ଗୀତ ?
ଗମ୍ଭୀର ତାର ମୁକ୍ତିର ଗୀତ
କାଅଁ କଲ ମୋତେ ବାଇ
ମୁଁ ତା, ହୃଦୟ ରକ୍ତେ ରଞ୍ଜିତ ।

ମିଶିଛି ଲୁହ ତାର କନ୍ଦନ
ଶୂନ୍ୟ ନିଶୀଥ-ହୃଦ-ନନ୍ଦନ.
ଶୂନ୍ୟ ମୋ ମନ ଗ୍ଭହେଁ ପଥ ସଚକିତେ ।
ଅହା ନିଶବଦ ସେ ନିଶୀଥେ !

ଶୁଣିଛି ମୁଁ ତାର ମୁକ୍ତିକଣ୍ଠେ
ବିଫଳତାର ଅନନ୍ଦ
ସେ ଯେ ଉପେକ୍ଷି ଗ୍ଭଲିଛି ମୁକ୍ତି ପଥିକ
ଜୀବନର ବାଧା ବନ୍ଧ !

ପୁଚ୍ଛିଲି ମୁଁ ତାକୁ "ତୁମ ତୁଲେ ନେବ ନାହିଁ ?"
ସେ ଯେ, ଉଦାସ ହତାଶେ କଲ କେତେ "ନାହିଁ ନାହିଁ !"
ମୁଁ ଗୋ ତାହାଲାଗି କାହିଁ ବାଇ ?
ମୁଁ ଗୋ ଅଶ୍ରୁ ଦେଉଛି ବାହି !

ସକଳ ଆପଣା ଭଲ ସେ ତ ପର,
ଶୂନ୍ୟ କଲ ଏ ସ୍ୱପ୍ନର ଘର,
ଶୂନ୍ୟ ରଜନୀ କେସନେ ବା କହ ବିତେ ?
ସେ ଯେ ଡାକିଗଲ କବା ଗୀତେ ।



## ସନ୍ଧ୍ୟା-ଆରତୀ

ବନ୍ଧୁ ନିଅ ଅଜ ତର;
ଅଶ୍ରୁ ଉଠିଛି ଭରି;
ସନ୍ଧ୍ୟାର ଦେଶେ ଯିବାକୁ ମୋ ମନ
(ଚିର) ଦୀନ ସନ୍ୟାସୀ ପରି ।

ରଜନୀ ଲଜ୍ଜା ଉଢଣି ଟାଣି.
ପ୍ରିୟାର ସ୍ପନ୍ଦାଣି ଖିରେ ଯାଏ ହାଣି,
ଲଗାଇଦିଅ କିଏ ସ୍ୱପ୍ନର ମାୟା,
ଧୈର୍ଯ୍ୟ ନ ପାରେ ଧରି !
ସନ୍ଧ୍ୟାର ଦେଶେ ବନ୍ଧୁନିଅ ମୋର ତରି !

ମୁଖର ବିଶ୍ୱ ହେ ମୁଖର କବି
ନତ କର ତୋର ମଥା,
ମୌନେ ନୀରବେ ଶୁଣି କିବା କହେ
ବ୍ୟଥିତ ଏ ନୀରବତା !

ଜୀର୍ଣ୍ଣ ମଳିନ ଅଜ ମୋର ବାସ,
ସବୁ କଳଙ୍କ କୁଟିଳତା ହାସ
ଖସିପଡ଼ୁ ମୃଗୋ ମୁକ୍ତ ହୃଦୟେ
ସନ୍ଧ୍ୟାଟି ନେବ ବରି !
ସ୍ତିମିତ ନୀଳ ଶାନ୍ତ ତଟିନୀ ପରି ।



## *ଅମ୍ବପାଳୀର ଉତ୍କଣ୍ଠା

ଆଜ ମୋର ପୁରେ ଆସିବେ ସଜନୀ;
ଜଗତ ଆଲୋକ ଗୋ !
ବାମ ବାହୁ ଆଖି ଥରେ ଘନ ଘନ
ଅଙ୍ଗ ପୁଲକ ଗୋ !
କ ଦେଇ ପାରିବି ଦେବତା ପଦ୍ମରେ
କହ୍ନିବୁ କ ସହୁ ରେ ?
ଆସିବେ ବୁଦ୍ଧ ଫୁଟାଇ ପଦ୍ମ
କୁଞ୍ଜ ଏ ମଝାରେ । ୧ ।

ହସି ହସି ଆସେ ଅରୁଣ ଏ ଉଷା
ହସିବ ମୋ ପୁରି ଗୋ,
ସକଳ ଜୀବନ ଧନ୍ୟ ସକଳ
ପୁଣ୍ୟ ମୋ ପୂର ଗୋ ।
ଉଇଁବେ ଲକ୍ଷ ସୂର୍ଯ୍ୟ ଚନ୍ଦ୍ର
ଉଜ୍ଜ୍ୱଳ ମଝାରେ,
ଆସିବେ ବୁଦ୍ଧ ଫୁଟିବ ପଦ୍ମ
ମୋ କୁଟୀରେ ସହରେ ! ୨ ।

କ ଦେବି ସଜନି କହନା ତୁ ବାରେ ?
ନଶ୍ୱର ଦେହ ଗୋ !
ନଶ୍ୱର ମୋର ରକ୍ତ ଅଧର;
କ୍ଷୁଣ୍ଣ ସେନେହ ଗୋ;

* ବୈଶାଳୀର ରାଜନର୍ତ୍ତକୀ । ବୌଦ୍ଧ ଯୁଗର ସନ୍ୟାସିନୀ ।

ଯନ୍ତ୍ର ଏ ମୋର   ଚଳ ଭୂଲୁ ଢଳେ
ମୃତ୍ୟୁ ହସଇ ରେ,
ଆସିବେ ବୁଦ୍ଧ   ଆସିବେ ଭିକ୍ଷୁ
କି ଦେବି ମୁଁ ସମ୍ମୁଖରେ ? ୩ ।

ଯୌବନ ମୋର   ଚଉ ବଜାରେ
ସଜନ ହୋଇଛି ଭ୍ରଷ୍ଟ,
ଦେବତା ଆସନ   ଶୂନ୍ୟ ହୃଦୟେ
ମୋ ପୂଜା କୁସୁମ ନଷ୍ଟ !
ପୋଛିବ ପଥର   ମୋ ଠାକୁର ଦାମେ ?
ଜଗବନ୍ଧୁ ହସଇ ରେ !
ଆସିବେ ବୁଦ୍ଧ   ଆସିବେ ଭିକ୍ଷୁ
କି ଦେବି ମୁଁ ସମ୍ମୁଖରେ । ୪ ।

ଭିକ୍ଷୁକ ମୁଁ ତ   ଚିର ଭିକ୍ଷୁକ
କି ଦେବି ଭିକ୍ଷା ଗୋ ?
ନିଃସ୍ୱ ଜୀବନେ   ସେ ମୋ ପ୍ରିୟ ଲାଗି
ଚିର ପ୍ରତୀକ୍ଷା ଗୋ !
ମନେ ଭାବେଁ ମୋର   ସବୁ ସମ୍ପଦ
ପଦେ ଅରପିଁ ରେ
ଆସିବେ ବୁଦ୍ଧ   ଜଗତ ବନ୍ଦ୍ୟ
କି ଦେବି ମୁଁ ସମ୍ମୁଖ ରେ । ୫ ।

ଶୁଣି ନା ସଜନ   ଡାକଇ କୋକିଳ
ମଳୟ କୁଞ୍ଜରେ,
କେଉଁ ପ୍ରିୟଜନ   ବାର୍ତ୍ତା ବହି ଗୋ
ଭ୍ରମର ଗୁଞ୍ଜରେ !

ଜଗତ ବନ୍ଦ୍ୟ     ଆଗମନୀ ଗାଇ
  ମଳୟ ବହଇ ରେ,
ଆସିବେ ବୁଦ୍ଧ   ଜୀବନ ଆଲୋକ !
  କି ଦେବି ମୁଁ ସହୁ ରେ । ୬ ।

ସେ ଚିର ମୁକ୍ତ     ଚିର ପ୍ରଶାନ୍ତ
  ଦେବେ କି ଭିକ୍ଷୁ ଦୀକ୍ଷା ?
ଭିକ୍ଷୁର ଥାଳ     ଶିରେ ବହୁ ନିତ
  ବିଶ୍ୱେ ମାଗିବି ଭିକ୍ଷା ।
ଶୂନ୍ୟ ଜୀବନ     ଅରପିବି ପଦେ
  ନେବେ କି ନା ସହୁରେ ?
ଆସିବେ ଜୀବନ     ଚିର ପ୍ରିୟ ମମ
  ବୁକ୍ଷ ଏ ମହୀରେ । ୭ ।



## ଭାରତ ଭିକ୍ଷୁ

୧

ଦେଖିଛୁ ଦେବତା ତାର ଦୀନ ଭିକ୍ଷୁ ରୂପ
ପୃଷ୍ଠେ ବହୁ ସୃଷ୍ଟି ବ୍ୟଥା ଅତ୍ୟାଚାର ସ୍ତୂପ
ଦ୍ୱାରେ ଦ୍ୱାରେ ବୁଲି-କରେ ଅଶ୍ରୁ ଦୁଃଖ ଭିକ୍ଷା
ତୁମେ ତ ଦେଇଛ ତାଙ୍କୁ ଚିର ଭିକ୍ଷୁ ଦୀକ୍ଷା ।
ଭିକ୍ଷୁ ଚିର ଭିକ୍ଷୁ ସେ ଯେ ନିର୍ଯାତନା ତାର,
କାହିଁ କଷାଘାତ-ପଦାଘାତ ପୁରସ୍କାର;
ଟେକେବେ ଅପମାନ ଘୃଣା ପଶୁ ବ୍ୟବହାର,
ସବୁ ଭୁଲି ଭିକ୍ଷୁକର ଭିକ୍ଷା ଖାଲି ସାର !

ଦେଖିଛୁ ସେ ଶୀର୍ଣ୍ଣ ଅଙ୍ଗୁ ଝରଇ ଶୋଣିତ,
ମାଡର ଦୁର୍ଦମ ନରଦସ୍ୟୁ ତାର ଚଉ !
ସକଳ ମାନବ ପଥ ଏଡ଼ି ଅଲକ୍ଷିତେ
ଚାଲିଛୁ ଉଦାର ଶାନ୍ତ ତବ ଜୟଗୀତେ ।
ଭାଳେଁ ମନେ ତା ପଦେ ମୋ ଅଶ୍ରୁ ଦିଏ ଢାଳି
ଏ ସଂସାର ପଥେ ତବ ଭିକ୍ଷୁ ଯାଏ ଚାଲି ।

— ୨ —

ପ୍ରଶାନ୍ତ ମୂରତି ଧୀର ତାର ପଦକ୍ଷେପ,
ନାହିଁ ତଳେ ମନେ ଶଙ୍କା ସନ୍ଦେହ ଆକ୍ଷେପ;
ଭୁବନ ଅନ୍ଧାରେ ବୁଲେ ଭିକ୍ଷା ତାର ଦୁଃଖ.
ଦେଖିଛୁ ପ୍ରଶାନ୍ତ ତାର ସମୁଜ୍ଜ୍ୱଳ ମୁଖ !
ଦେଖିଛଲି ଦୁଃଖୀର ଦୁଃଖ ଯାଏ ଅପସରି
ଆଶାର ଆଲୋକ ଖେଳେ; ଶଙ୍କିତ ଶର୍ବରୀ !
ଦେଖିଛୁ ସେ ତବାଲୋକେ ଅନ୍ଧକାର ପାରେ,
ଜୀବନ ପ୍ରତିଷ୍ଠା ତାର ମୃତ୍ୟୁ ହାହାକାରେ !
ମରୁଭୂମେ ଫୁଟାଏ ସେ ଜୀବନର ଫୁଲ,
ନିର୍ଯାତିତ ଦୁଃଖୀ ବନ୍ଧୁ ନେବାକୁ ଆକୁଳ;
ଶୋଭଇ ତା ଅଙ୍ଗେ ଥାଇ ବସ୍ତ୍ର ଗଇରିକ
ଗୈରିକ ପତାକା ! ତବ ଦୁର୍ଦମ ସୈନିକ—
ମନ୍ଦେ ହସି କରେ ମୌନ ଆଲୋକ ପ୍ରତୀକ୍ଷା,
ଦେଖିଛୁ ଦେବତା ତବ ଭିକ୍ଷୁ କରେ ଭିକ୍ଷା ।

—୩—

ସନ୍ଧ୍ୟା ଅନ୍ଧକାରେ ତବ ଜୟ ଗୀତ ଗାଇ,
ବିଜୟ ବାହିନୀ ନାଏ ଅଲକ୍ଷେ ଚଳାଇ,
ଯାଏ ଏହି ପଥେ ମୌନ ସକଳ ପଶ୍ଚାତେ
ନିଃସଙ୍ଗ ବିହଙ୍ଗ ଅପେ ଘନାବୃତ ରାତେ,
ଗ୍ଭଲିଯାଏ ଧୀର ପଦେ ଓଷ୍ଠେ ସ୍ମିତ ହାସ,
ବିଶ୍ୱ ବ୍ରହ୍ମାଣ୍ଡର ଯେତେକ ବେଦନା ପ୍ରକାଶ !
ଯେ ହାସେ ପ୍ରସ୍ତର ଶିଳା କରେ ନିବେଦନ
କାଳର ନିଷ୍ଠୁର ଲୀଳା ! ହୁଏଇ ଯେସନ—
ରଣ ଶେଷେ ରଣଭୂମି ! ତୀବ୍ର ଅନ୍ଧକାରେ—
ପଦ୍ମଫୁଲ କ୍ଷୀଣ ହସେ ! ବିଜନ କାସାରେ ।
ସେହି ହାସ ତାଂର ଦେଖି ଝରଇ ମୋ ଲୁହ;
ସେହି ହାସ ତଳେ କେତେ ଶୋଣିତର ସୁଅ !
ଗାଇ ତା ବିଜୟ ଗୀତ କିବା ଆମ୍ଭହର,
ଧରାର ଶୃଙ୍ଖଳ ହାସେ ଖସିପଡ଼େ ପର !

—୪—

ଧରଣୀ ରାକ୍ଷସ ତୃଷା ନିବାରଣ ଲାଗି
ସମବେତ ଭିକ୍ଷୁ ସଂଘ ଦୀନ ସର୍ବତ୍ୟାଗୀ !
ଯେ ଭିକ୍ଷୁ ଶୋଣିତେ କର ଧୌତ କରି ଶାନ୍ତ
ଧରଣୀର ପାପ, ତହିଁ ସେ ଯେ ଲଭେ ପାନ୍ଥ ।
ଗୃହତ୍ୟାଗୀ ଦେଶତ୍ୟାଗୀ ଗ୍ଭଲେ ସଂଘ ସାଥେ,
ଗୈରିକ ପତାକା ତବ ମୌନେ ବନ୍ଧି ହାତେ,

ବୁଲନ୍ତି ନିର୍ଭୀକ ଧୀରେ ନିର୍ଯାତିତ ଦ୍ୱାରେ
ଅବା ଯହିଁ ନିପୀଡ଼ିତ ମରେ ହାହାକାରେ
ଧରଣୀ ନ ଦିଏ ଯାକୁ ତଳେ ହେଲେ ରାହା
ଦିନେ ହେଲେ ଦୁଃଖେ ଯାର ନ କରେ କେ ଆହା,
ସଭ୍ୟତା କଟାକ୍ଷେ ଯାକୁ କରେ ଉପହାସ,
ଚିର ଅନାହାର କ୍ଳିଷ୍ଟ, ନ ଫୁଟେ ଯା ହାସ,
ଲକ୍ଷ କୋଟି ଅଭିଶପ୍ତ ଦଗ୍ଧ-ପ୍ରାଣ-ଲାଗି
ଦ୍ୱାରେ ଦ୍ୱାରେ ତବ ଭିକ୍ଷୁ ଭିକ୍ଷା ଯାଏ ମାଗି ।



## ରୁଦ୍ର

ରୁଦ୍ର ! ଦେଖିଛି ତବ ଭିକ୍ଷୁର ରୂପ,
ଯହିଁ ତାହାର ବିଶ୍ୱ ବେଦନା ସ୍ତୂପ !
ତା ବେଦନ ନୟନ ନୀର ଝର ଝର,
କମ୍ପିତ ମ୍ଳାନ ବ୍ୟଥିତ ଅଧର,
ବଜ୍ର ସମାନ ଶୁଣିଛି ସେ ତବ ବାଣୀ
ପ୍ରଳୟର ପଥେ ନେଇଛ ହେ ତାକୁ ଟାଣି ।୧।

ନେଇଛ ହେ ତାକୁ ମୃତ୍ୟୁ କରାଳ ଦେଶେ,
ମିଥ୍ୟା ରାଜଇ ଯହିଁ ବିଜୟୀର ବେଶେ !
ଯେ ଦେଶେ ଶୁଷ୍କ ପରାଣ କମଳ,
ମତ୍ତ ମାନବ ଭକ୍ଷେ ଗରଳ,
ସେ ଦେଶେ ଗୌରବ ଦେବତା ସେ ତବ ବାଣୀ
ଭିକ୍ଷୁର ବେଶେ ନେଇଛ ତ ତାକୁ ଟାଣି ।୨।

ବହାଇ ଯେ ଦେଶେ ଶୋଣିତ ସରିତ ଧାରା,
ଶଙ୍କିତ ଧରା ବହି ନରପାପ ଭାରା;
ସାମ୍ୟ ମୈତ୍ରୀ ଯହିଁ ପରିହତ,
ବିଜୟୀ ବାହିନୀ ତବ ଅବନତ,
ସେ ଦେଶେ ଦେବତା ଗାଇବାକୁ ତବ ବାଣୀ
ମୃତ୍ୟୁର ପଥେ ନେଇଛ ତ ତାକୁ ଟାଣି ।୩।

ନେଇଛୁ ସେ ବର ଅନଳେ ଜ୍ୱଳିବା ଦୀକ୍ଷା
ବିଶ୍ୱ ଦୁଆରେ କରେ ସେ ପୀରତି ଭିକ୍ଷା ।
ତା ବାଣୀ ପରଶେ ସ୍ତବଧ ପରାଣ,
ଢାଳଇ ଅଶ୍ରୁ ମୌନ ପାଷାଣ,
ବର ନେଇଛୁ ସେ ପରମାଦ ଜାଣି ଜାଣି
ଶୁଣି ହେ ରୁଦ୍ର ତୁମର ବଜ୍ର ବାଣୀ ।୪।

ତୁମର ମନ୍ତ୍ର ଶୁଣି ସେ ସକଳ ତ୍ୟାଗୀ,
ଦୀନ ଦରିଦ୍ର ବ୍ୟଥାର ସେ ଅନୁରାଗୀ;
ଆପଣା ଅଶ୍ରୁ ରକ୍ତ ତିଆଗି,
ତୁମ ମଙ୍ଗଳ ସୃଷ୍ଟିର ଲାଗି,
ଜ୍ୱଳନ୍ତି ଉଦାସ ନାହିଁ ତା ଦୁଃଖ ଗ୍ଲାନି;
ମରଣକୁ ହସେ ଶୁଣି ସେ ରୁଦ୍ର ବାଣୀ ।୫।

ତାର ଅପମାନେ ହସି ଉଠ ତୁମେ ରୁଦ୍ର !
ଦୀପ୍ତ ତା ମୁଖ ! କି ବୁଝିବ ମୂଢ଼ଗୋ କ୍ଷୁଦ୍ର ?
ତା କୋମଳ ଡାକେ କମ୍ପେ ପରାଣ,
ପୌରୁଷ ମୋର ଲଭେ ଅପମାନ,
ମୌନ ଜ୍ୱଳେ ସେ କାଳ ଅନ୍ଧାର ହାଣି
ଶୁଣିଛୁ ରୁଦ୍ର ତୁମ ଅଲୋକର ବାଣୀ ।୬।

ଯେ ଦାନ ଦେଲ ହେ ତା ଗଳେ ପୁଷ୍ପମାଳା,
ହସିଲ ମୃତ୍ୟୁ ସପ୍ତ ସିନ୍ଧୁ ପାର;
ଶାନ୍ତ ହସିଲ ବେଦନାର ହ୍ରାସ,
ପଶ୍ଚାତେ ଭୋଗ ସକଳ ବିଳାସ,
ଢାଳିଲ ଅଶ୍ରୁ ପରାଣ ପ୍ରେୟସୀ ରାଣୀ,
ତୁଚ୍ଛ କରି ସେ ଗାଇଲ ରୁଦ୍ର ବାଣୀ ।୭।

"ମା ଭୈଃ, ମା ଭୈଃ" ବାଜିଲ ରୁଦ୍ର ଶଙ୍ଖ !
ପୁଲକ ଉଠିଲା ତବ ଭକ୍ତର ଅଙ୍ଗ;
ତୁମରି ବିଜୟ ପତାକା ବାନ୍ଧି ସେ,
କଠୋର କରିଛି ପରାଣ କୁଳିଶେ,
ଗିଳିବ ଗରଳ ପ୍ରାଣ ଅମୃତ ଘେନି,
ଗାଇଲେ ନିର୍ଭୟେ ଶୁଣି ହେ ରୁଦ୍ର ବାଣୀ ।୮।

ମାନବ ମଶାଣେ କନ୍ଦନ ଉଠେ ଯନ୍ତ୍ର,
ଧ୍ୱଂସର ଲୀଳା ! ହାହାକାର କରେ ମନ୍ତ୍ର ,
ବୈଶାଖେ ବୋଲି ଅଗ୍ନିର ବରଷା,
ମୃତ୍ୟୁରେ ଦେବ ଅମର ଭରସା,
ସକଳ ତେଆଗି ସନ୍ନ୍ୟାସୀ ତବ ରୁଦ୍ର;
ବାନ୍ଧି ନେବ ଶିରେ ସକଳ ତୁଚ୍ଛ ଶୂଦ୍ର ।୯।



## * ରାଧାକୃଷ୍ଣ

—୧—

ନରରୂପେ ପର୍ ଧନେ ବିଶ୍ୱର ଦେବତା,
କେବ ବୋଲି ସ୍ପନ୍ଦେ ମିଥ୍ୟା ଅବିଶ୍ୱାସ ବ୍ୟଥା,
ରଚିଲ ଗୋପାଳ ଲୀଳା, ବୃନ୍ଦାବନ ରାସ ?
ନିତ୍ୟ ଶିବ ସୌନ୍ଦର୍ଯ୍ୟର ସରଳ ପ୍ରକାଶ ?
ଲକ୍ଷ କୋଟି ବ୍ୟାକୁଳାତ୍ମା ଅମୃ-ସ୍ଥିତ ଭୂଳି,
ଗୋପୀଙ୍କାର ବେଶେ ପଦେ ପଡ଼ିଲ ଢଳିଳି,
ବିପୁଳ ମାଧୁର୍ଯ୍ୟେ କର ଜୀବନ ପ୍ରତିଷ୍ଠା,
ଶିଖାଇଲ ଶେଷେ ଅନାସକ୍ତ କର୍ମନିଷ୍ଠା ।
ସେ ଧନର ଯୋଗେଶ୍ୱର ପରମ ବୈଷ୍ଣବ,
ଆଜ କାମୁକର ରୂପେ ! ଏ କିବା ସମ୍ଭବ ?
ଲାଲସାର ବହ୍ନି ତେଜେ କୁତ୍ସିତ ମଳିନ !
ହରନ୍ତୁ ମାନବ ଭୋଗେ ଦେବତାର ଚିହ୍ନ ।
ଅସହ୍ୟ ଅଜ୍ଞାନ ମିଥ୍ୟା କ୍ରୂର ଅପମାନ !
ମାନବେ ମାନବ-ଦେବ କର ପରିତ୍ରାଣ ।



—୨—

ବିଶ୍ୱ ବିରହିଣୀ ରାଧା, ପରମ ବୈଷ୍ଣବ !
ଗାଏ ଯୁଗେ ଯୁଗେ କିମ୍ବା ଅସହିଷ୍ଣୁ ଭବ
ତୁମ ସ୍ୱଚ୍ଛ ଅପ୍ରାକୃତ ପ୍ରେମର ଗରିମା,
ସ୍ତମ୍ଭ ଅଶ୍ରୁ ପୁଲକର ପାଇ ନାହିଁ ସୀମା ।

* ରଙ୍ଗମଞ୍ଚରେ "କିଶୋର ଚନ୍ଦ୍ର" ଦର୍ଶନ କରି ।

ମହାଭବମୟି ! ନିତ୍ୟ ମନ-ବୃନ୍ଦାରଣ୍ୟେ
ମିଳନ ଆକାଙ୍କ୍ଷା ବହି ଏକା ସଂଗୋପନେ
ଅଲୌକ ସନ୍ଧାନେ ଚଲ ! ତୁଚ୍ଛ ବ୍ୟଥା ସର୍ବ ।
ଅସହାୟ ମାନବର ତୁମେ ନା ଗୌରବ ?
ମାନବ ଲାଳସା ଦଗ୍ଧ ଅବନତ ପାପେ,
ସ୍ୱର୍ଗୀୟ ମାଧୁରୀ ଶୂନ୍ୟ ନର ଅଭିଶାପେ,
ବିଳାସ ସଙ୍ଗିନୀ ତୁମେ ଆଜ କଳ୍ପନାର,
ମାନବର ପାପେ ତୁମେ କ୍ଷତ କଦାକାର ।
ବୃନ୍ଦାବନ ରାସସ୍ଥଳୀ ଆଜ ଅନ୍ଧକୂପ
ନିତ୍ୟ ପ୍ରେମ ସହିଁ ମିଥ୍ୟା କଳଙ୍କର ସ୍ତୂପ ।

—ଗ—

ଅଜ୍ଞାନ ତମିସ୍ରାଚ୍ଛନ୍ନ ମୋହାନ୍ଧ ମାନବ,
କଳ୍ପିତ ପ୍ରତିମା ଗଢ଼ି ନିତ୍ୟ ନବ ନବ,
ଲଗାଏ ମିଥ୍ୟାର ଲୀଳା ! ଶୈଶବ ଯେସନେ —
ନିରେଖି ଆପଣା ସୃଷ୍ଟି ବିହ୍ୱଳ ସ୍ୱପନେ ।
ଚିର ମୌନ, ନିର୍ବିକାର ! ଈଶ୍ୱର ଆଶ୍ରୟ !
ମନ୍ଦେ ହସ ଦେଖି ନବ ମିଥ୍ୟା ଅଭିନୟ !
ଅବା ଅପସର ଯାଅ ଶୂନ୍ୟ ହୁଏ ଧରା,
ଶୂନ୍ୟ ଦେବାଳୟ ଶୂନ୍ୟ ପୂଜାଫୁଲ ପରା ?
ପୂଜା ପାଏ ମିଥ୍ୟା ଅବା ଅଜ୍ଞାନ ଅନ୍ଧାର,
ଦେବତା ଆସନେ ବସେ ସହସ୍ର ବିକାର—
ବିକୃତ ଈଶ୍ୱର ! ଭୋଗ ଲିପ୍‌ସା ଲଭେ ରୂପ ।

ମାନବ୍ ଅପଣା ଲଗି ରଚେ ମୃତ୍ୟୁ କୂପ ।
ତବ ଅପମାନେ ନର ଲଭଇ ମରଣ,
ଅନ୍ଧ ପ୍ରବଞ୍ଚନା ଢଟେ ଶକ୍ତ ହରଣ ।

—୪—

ଅଜ୍ଞାନ ଅବିଦ୍ୟା ଭୁଲେ ପାରନ୍ତୁ ହେ ଧର,
ଅପ୍ରାକୃତ ପ୍ରେମ ତବ ଛଦ୍ମଚାଳ ପର;
ଅପସର ଯାଅ ତୁମେ କଳ୍ପନାରୁ ଦୂରେ,
ଶଙ୍ଖ ଘଣ୍ଟା ବାଜେ ମାନବର ଶୂନ୍ୟ ପୁରେ ।
ଅପ ଦେବତାର ପୂଜା ଗୌରବେ ବିହ୍ୱଳ,
ଅମୃତପ୍ରାପ୍ତି ଲଗି ନର ଡାଲେ ଅଶୃଙ୍ଖଳ,
ସହଜ ଯା ରହିଯାଏ, ଶର ଦୁରବୋଧ,
ମାନବ ମିଥ୍ୟାର ସେ'ବା ପ୍ରଭୁ ପ୍ରତିଶୋଧ ।
ବାକ୍ୟ ମନ ଅଗୋଚର ଜୀବନ ଦେବତା—
ତବ ପୂଜା ରଙ୍ଗ ମଞ୍ଚେ ? ପରିହାସ କଥା ।
ଅଜ୍ଞାନ ତମିର ଦୂର ଅଲୋକେ ଦେବତା,
ହୃଦୟ ମନ୍ଦିରେ ଜ୍ଞାନ କର୍ମର ବାରତା—
ଫୁଟି ଉଠୁ । ନର ନେଉ ସଂଗ୍ରାମର ଦୀକ୍ଷା;
ଶେଷେ ଶାନ୍ତ ବୃନ୍ଦାବନେ ମିଳନ ପ୍ରତୀକ୍ଷା ।

—୫—

ମାନବ ଅକୂଳ-ଅମ୍ବା-ବିରହିଣୀ-ରାଧା
ଲୋକ ଚକ୍ଷୁ ଅନ୍ତରାଳେ ଦଳି ଭୟ ବାଧା—

ଚଲେ ଶୂନ୍ୟ ଅଭିସାରେ ଶ୍ରାବଣ ନିଶୀଥେ,
"କୃଷ୍ଣ ହର ପ୍ରାଣାରାମ" ଅକୁଳ ସଙ୍ଗୀତେ ।
ନିତ୍ୟ ବ୍ୟାକୁଳତା ତାର, ଅଶେଷ ସନ୍ଧାନ,
ମିଳନର ଆଶା ବହି ଅସ୍ଥିର ତା ପ୍ରାଣ ।
ଜୀବନ ସଂଗ୍ରାମେ ଶତ ଘାତ ପ୍ରତିଘାତେ,
ମୃତ୍ୟୁ ଅବସାଦେ ଦୁଃଖେ ରଜନୀ ପ୍ରଭାତେ,
ଏକଇ ସଙ୍ଗୀତେ ଅଶ୍ରୁ ବିରହ ପ୍ରସାର !
ଅବିଦ୍ୟା କବଳେ ତତ୍ତ୍ୱ ଲଭଇ ବିକାର ।
ସାଧକ ବିରହୀ ଜନ ପ୍ରାଣାରାମ ଧନ
ଦେବତାର ରାସସ୍ଥଳୀ ନିତ୍ୟ ବୃନ୍ଦାବନ ।
ସାଧକ ଲଭଇ ପ୍ରୀତି-ମିଳନ-ଆସ୍ୱାଦ,
ବାସନା-ବିକୃତ-ଜନ ପ୍ରାଣ-ଉନମାଦ ।



## ଶିଶୁ ସୃଷ୍ଟି

ଜଗତର ଶିଶୁ ଆସ ଆସ ମୋର କୋଳେ ।
ଆସ ଏ ବକ୍ଷେ ପୀରତି ସେନେହ ଭୋଳେ,
ଆସ ଆନନ୍ଦ ! ଆସରେ ଜୀବନ ଜଇଁ !
ସୃଷ୍ଟିର ଜୟ ! ସକଳ ଜୀର୍ଣ୍ଣ
ହସି ହସି ଯାଅ ଛୁଇଁ ।

ସେ ହାସେ ବିକଶେ ସୃଷ୍ଟିର ଲୀଳା ପଦ୍ମ ;
ସେ ଭାରତୀ ଶୁଣି ମରଇ ମିଥ୍ୟା ଛଦ୍ମ ;

ମରଣ ମରଇ ଅସ୍ଥିର ପଦ ପାତେ,
ଜୀବନ ନିତ୍ୟ   ମନ୍ତ୍ର ଅମର
ଗାଅ ମଙ୍ଗଳ ପ୍ରାତେ ।

ଦର୍ଶନେ ରୂପ ମରେ ମୋର ହାହାକାର,
ମୃତ୍ୟୁ ସ୍ପୃହାରୁ ସକଳ ଜୀବନ ସାର —
ଅମୃତ ଗୀତ ଅବାରିତେ ପଡ଼େ ଝରି,
ମନେ ଭାବିଲେଁ ଅହା   ନିତ୍ୟାନନ୍ଦେ
ଅଜ୍ଞାଏଁ ହେଲେ ମରି ।

ଆସରେ ବକ୍ଷେ ସକଳ-ଜୀବନ-ଅଶା !
ଆସ ମୋ ଜୀର୍ଣ୍ଣ-କାବ୍ୟ-ଅଲୋକ-ଉଷା
ଛିନ୍ନ ଯେ ତାର ସେ ପରଶେ ଯାଉ ଯୋଡ଼ି
ସବୁ ବନ୍ଧନ   ମରଣର ଭୟ
ଅବହେଳେ ଯାଉ ଟୋଳି ।

ନ ଶୁଣିବି ଆଜ ନ ଶୁଣିବି କାର କଥା,
ନ ଗଣିବି କଷ୍ଟ ସଂଗ୍ରାମ କ୍ଷତ ବ୍ୟଥା;
ସକଳ ଅଜ ତୋ ଅର୍ଥ ବିହୀନ ବାଣୀ
ମର୍ତ୍ତ୍ୟର ଏଇ   ଚିର କଙ୍ଗାଳ
ସାନ୍ତ ରଖିବ ଗ୍ଲାନି !

ତୁଚ୍ଛ ଶୋଚନା ତୁଚ୍ଛ ସକଳ ଭୀତି;
ପୂର୍ଣ୍ଣରେ ଅଜ ଜୀବନ ଛିନ୍ନ ଗୀତି,
ପରାଣ ପାଏ ପୂର୍ଣ୍ଣ ! ନୁହେ ରେ ଖାଲି !
ଆସ ଆନନ୍ଦ   ନିତ୍ୟ ଜୀବନ
ବକ୍ଷେ ଯାଅ ମୋ ଢାଳି !

ସକଳ ଜୀର୍ଣ୍ଣ ପୁରାତନ ପଡ଼େ ଝରି,
ପଭ୍ରଷ ପବ୍ନ ବାତ୍ୟା ନିଏଦରେ ତର୍ଜ୍ଜି;
ହସେ ପୁଣି ଉଷା ଶୁଭେ ଅଲୋକର ଗାନ !
ନବ ନବ ରୂପେ ପରାଣ ଏ ଭୂମେ
ବିକଶିତ ଭଗବାନ ।

ହସି ଉଠ ଘର ଅନ୍ଧାର ଦୀପ ମମ !
ଭ୍ରଷ୍ଟ ଭ୍ରାନ୍ତ ଶ୍ରାବଣ ବଉଦ ସମ;
ନିଅ ମୋ ଜୀବନ ସବୁ ସମ୍ବଳ ଧନ,
ନିଅରେ ଆଶିଷ ! ସବୁ ମଙ୍ଗଳ—
ଦେବ ହସି ପୁରାତନ ।



## ଉତ୍ସବ ଦୀପ

ଦୁଃଖେ ତୁମର ଉତ୍ସବ ଦୀପ ଦେବତା,
କେମତେ ମତେ ଉଠେ ଜଳି;
ଦୁଃଖୀର ଲୁହେ ତୁମର ରତ୍ନ ଆସନ
ଦାବାନଳି ପଡ଼େ ଢଳି !
ଦୁଃଖୀର ସଖା ଶିରେ ବହ୍ନିଅ ତ୍ରାସ,
କଙ୍ଗାଳ ମ୍ଳାନ ଅଧରେ ଫୁଟାଅ ହାସ;
ଏ ଘର ଅଧମ ତବ ମହାଦାନ ଜୀବନେ,
ପାରେ ନାହିଁ ତଳେ ଜଳି;
ଉତ୍ସବ ଦୀପ କେମତେ ମତେ ଉଠେ ଜଳି !
ଜୀବନ ଯଜ୍ଞେ ଢାଳିଦିଅ ଦେହୁ ଶୋଣିତ,

ଘାତକଙ୍କୁ ଦିଅ ଆପଣାର କ୍ଷମା ବଢ଼ାଇ;
ଦୁର୍ଦ୍ଦିନେ ଶୁଭେ ତୁମରି ନୂପୁର ରଣିତ
ପାନ୍ଥଙ୍କୁ ଦିଅ ଅନ୍ଧାରେ ପଥ ବତାଇ ।

ଅଶ୍ରୁ ବେଦନା ପୋଛି ଯାଅ ନିଜ କରେ ହେ,
ତୁମ ମହାଦାନ ଅନ୍ତରେ ନାହିଁ ଧରେ ହେ,
(ତବ) ଆଲୋକ ସ୍ପର୍ଶ ଉଇଁଲେ ପରାଣି ପରେ ହେ,
ମୃତ୍ୟୁ ଦୈନ୍ୟ ଅନ୍ଧାର ପଡ଼େ ବଳି !
ଉତ୍ସବ ଦୀପ କେତେ ମର୍ତ୍ତେ ଉଠେ ଜଳି ।

ମଙ୍ଗଳମୟ ନିତ୍ୟାନନ୍ଦ ଜ୍ୟୋତି !
କର ଦରିଦ୍ରେ ତବ ଇଚ୍ଛାର ଦାସ !

ଧନ୍ୟ ହେଉ ହେ ତୁମରି ଆଲୋକେ ଜୀବନ,
ସବୁ ଜଞ୍ଜାଳ ସକଳ ଗ୍ଳାନି ପ୍ରାସ ।
ଦରଶନ ଦିଅ ଉଜ୍ଜ୍ୱଳ ହେଉ ପୁର,
ଚିର ପ୍ରେମୀ ତୁମାର ସକଳ କର ହେ ଦୂର

ସକଳ ମୋ ପ୍ରିୟ ଯାହା ଏ ଜୀବନେ
କର ପ୍ରଭୁ ଆପଣାର,—
ତୁମ ପୀରତିରେ ଯାଉ ଏ ଜୀବନ ଚଳି;
ଉତ୍ସବ ଦୀପ କେତେ ମର୍ତ୍ତେ ଉଠେ ଜଳି !

ଲୋଡ଼ିଲି ଯାହା ମୁଁ ଦେଇଛ ସକଳ ଦେବତା,
ଲୋଡ଼ ନାହିଁ ବୋଲି ତୁମ ଅମୃତ ପ୍ରୀତି ହେ,
ପ୍ରେମମୟ ରୂପ ଲୁଚାଇଛ ମୋର ଭରତା,
ଗାଇନାହିଁ ବୋଲି ତୁମରି ବିଜୟ ଗୀତି ହେ;
ଏ ଛଳନା ସତି ଚିର ପ୍ରିୟ ନାହିଁ ଯାଚେ ହେ;

ତୁମର ଦ୍ୱାରରେ ସକଳ ବନ୍ଦମା ଭ୍ରାଜେ ହେ;
ଦେଇଛ,ଦେଇନ ଆପଣାକୁ ବୋଲି ଲାଜେ ହେ
ମରୁଥାଏ ନୀତ ଅନ୍ଧାରେ ଶତ ଦଳ !
ଉତ୍ସବ ଦୀପ କେତେ ମତେ ଉଠେ ଜଳ ।



## ଭିକ୍ଷୁ ଗୀତ

ଯୁଗେ ଯୁଗେ ଧନ୍ୟ ଦେବଦୂତ ଅବତାର,
ବୁଦ୍ଧ, ଖ୍ରୀଷ୍ଟ ଗୌରାଙ୍ଗ ଏ ଭୁବନ କଲେ ସାର;
ଆପଣା ରକତେ ହରିବାକୁ ଭବଭୟ !
ଅବନତ ଶିରେ ଗାଇଲା ଭିକ୍ଷୁ,
"ଜୟ ହେ ଦେବତା ଜୟ ।"

ଯାଇଛି କି କହ ଧରଣୀ ବେଦନା ତ୍ରାସ ?
ଲୁଚିଲା ଏ କାଳ କରେ ନାହିଁ ଉପହାସ ?
ଧରଣୀ ବକ୍ଷ ଶୋଣିତେ ନୁହେଁ କି ସିକ୍ତ;
ଚିର ବୁଭୁକ୍ଷୁ ମାନବ କି ନୁହେଁ ରିକ୍ତ ?
ଏ ଗଗନ ଆଜ ନୁହଇଁ କି ତମୋମୟ ?
ଅବନତ ଶିରେ ଗାଇଲା ଭିକ୍ଷୁ
"ଜୟ ହେ ଦେବତା ଜୟ ।"

ଆଜ ସେ ଭିକ୍ଷୁ ରୁଧିର ପଡ଼ଇ ଝରି,
ନୟନ ଯୁଗଳ ଅଶ୍ରୁରେ ଉଠେ ଭରି,
ଅସ୍ଥିର ପଦେ ଶୂନ୍ୟକୁ କରି ଲକ୍ଷ୍ୟ,
ହତ୍ୟାର ମୁଖେ ପତାଇ ଦେଉଛି ବକ୍ଷ;

ଭିକ୍ଷା ମିଳେ କି ଅପଣାକୁ କରି କ୍ଷୟ ?
ଅଶ୍ରୁ ନେତ୍ରେ        ଗାଇଲା ଭିକ୍ଷୁ
"ଜୟ ହେ ଦେବତା ଜୟ।"

ଯେତେ ମୁକ୍ତିର ପତାକା ବହୁଛ ହାତେ,
ବରାଭୟ ଗାଇ ଚାଲିଛ ଜୀବନ ରଥେ,
ଲଗିନ କି କହ ହିଂସା ଶୋଣିତ ମଣୀ ?—
ଭିକ୍ଷୁ କହଇ ହସି,
"ଦୈବର ଏଯେ ଅମୃତ ବରାଭୟ।"
"ଦୀନ ଜନ ଆଶା, ଜୟ ହେ ଦେବତା ଜୟ !"

ଦେବତାର ଦୂତ ଚାଲିଯାଏ ଧରାପରେ;
ଦୁଃଖୀ ପରାଣେ ପ୍ରୀତି ଆଶା ନାହିଁ ଧରେ।

ଦୁଃଖ ଭୂମିରେ ନିମେଷୋଜ୍ଜ୍ୱଳ ଚନ୍ଦ୍ର;
[illegible]ବା ନିରାଶାରେ ଗରଜେ ବଜ୍ର ମନ୍ତ୍ର !
ନିମେଷକେ ପୁଣି ସକଳ ଭୂମିରେ ଲୟ;
ମନ୍ଦେ ବିହସି                ଗାଇଲା ଭିକ୍ଷୁ
"ଜୟ ହେ ଦେବତା ଜୟ।

"ଅମା ଅନ୍ଧାର ମୃତ୍ୟୁ ଦହନ ଭେଦ,
ଦେବତାର ଦୂତ ଧରାପରେ ଯାଏ ଖେଦ;
ତା ପଦ ପରଶେ ହସଇ ପଦ୍ମ ପୁଣ୍ୟ,
ମନ୍ତ୍ର ତା ବାଣୀ ମୁଖରିତ କରେ ଶୂନ୍ୟ;
ତାହାର ପରଶେ ଧରଣୀର ପାପକ୍ଷୟ !"
ମୁଗ୍ଧ ନେତ୍ରେ        ଗାଇଲା ଭିକ୍ଷୁ
"ଜୟ ହେ ଦେବତା ଜୟ !"

"ନ ମିଳବ ନାହିଁ ମିଳୁ ପଟନ୍ତ କାହିଁ ଭଷା,
ଭୁବନର ପାପେ ଅମ୍ଭ ଅଦ୍ଭୁତ ଦୀକ୍ଷା !
ଦେବତାର ଦୂତ ଆପଣା ଶୋଣିତ ଢାଳି,
ପାପଭୂର ବକ୍ଷ ପୃଷ୍ଠେ ଗଲେଣି ଚାଲି
ବକ୍ଷେ ଏସନେ ବଜ୍ର ନେଲେ କ୍ଷତଚୟ !
ସେ ପଥ ପଥିକ ଦୀନ ଭିକ୍ଷୁ !
ଜୟ ହେ ଦେବତା ଜୟ !"



## ଦୈନ୍ୟ ପ୍ରକାଶ

ସକଳ ଦୃଷ୍ଟି ଏଡ଼ି ଏଥିଯାଉ
ଜୀବନ ବନ୍ଧୁ ମୋ ଜୀବନ ବନ୍ଧୁ;
ଦିବସ ଏ କାଳ ମଳାନ ଚନ୍ଦ୍ର
ନ ଦେଉ କନ୍ଧ ଗୋ ନ ଦେଉ କନ୍ଧ ।

ମୁଁ ଗୋ, କାସାର କମଳ, ରଜନୀଗନ୍ଧା,
ମୋ ଜୀବନ ପ୍ରଭୁ ଏକଇ ସନ୍ଧ୍ୟା !
ବାଟରେ ଚଳିବ ଦୂର ପରବାସୀ
ଦିବସ ବାସ୍ତେ ନିମେଷେ ରହ ଗୋ ନିମେଷେ ରହ ।
ଦେବାର ଗର୍ବ ନାହିଁ ମୋର କିଛୁ
ଦୁଃଖ ନାହିଁ ମୋ ଶୋଚନା ନାହିଁ ।
ଏକଇ ଦିନର ହାସ୍ୟ ଅଶ୍ରୁ
ସଞ୍ଚିତ ମୋର ତୁମରପାଇଁ ଗୋ ତୁମରପାଇ ।

ତୁମ 'ବାଣୀ ବନ୍ଧୁ ଫୁଟିଛି ଝରଣ୍ଟି

ତୁମ ସଙ୍କେତ ନୀରବେ ଗୁହ୍ନଁ ଗୋ ନୀରବେ ଗୁହ୍ନଁ;

ଝୁଲିଛି ଅଲୋକ ଘନ ଅନ୍ଧାର

ସବୁ କୋଳାହଳ ଦୁଃଖ ନାହିଁ ଗୋ ଶୋଚନା ନାହିଁ ।

ପ୍ରାଣ ବୁଦ୍‌ବୁଦ ହେ ମହାସିନ୍ଧୁ !

ଲୁପ୍ତ ସେ ଦେହେ ମୁଁ କ୍ଷୀଣ ବିନ୍ଦୁ,

ହେ ମହା ମହେଶ ନିରେଖି ହାସ୍ୟ,

ବିକଟ ଅନଳ ମିଶିବ ତହିଁ ଗୋ ମିଶିବ ତହିଁ !

---

## ସୁପ୍ତ ଦେବତା

(କୌଣସି ନର-ରାକ୍ଷସ ଉଦ୍ଦେଶ୍ୟରେ ପ୍ରାର୍ଥନା)

ଅଜି ହତ୍ୟାରକତେ କଳୁଷିତ ଯାର କର,

ପରାଣେ ଯାହାର ପ୍ରବଳ ଶୋଣିତ ତୃଷା,

ତୁମ ଅମୃତ ପୀରତି ପରାଣେ ଭର

ଭସର ଜୀବନେ ଅଣ ଅମୃତ ତୃଷା ।

ଏ ମାନବଲାଗି ଶୁଷ୍କ ଲୋତକ ଯାର,

ସ୍ୱାର୍ଥର ମୋହେ ହୃଦୟ ନ ଯାଏ ଗଳି,

ନ ଛୁଏଁ ଯା ଶତ ଦୁର୍ବଳ-ହାହାକାର,

ସୁନ୍ଦର ଯାର ପରାଣେ ଯାଇଛି ଜଳି—

ଢାଳିଦିଅ ପ୍ରଭୁ ତୁମର କରୁଣା ବିନ୍ଦୁ,

ପୀରତି ସରିତେ ସେ ଭୂମିକର ହେ ସିକ୍ତ,

ଡାକି କହ ବାରେ ଯହିଁ ପ୍ରାଣ-ମହାସିନ୍ଧୁ,

ବ୍ୟର୍ଥତା ତାର ଲୁଟେ ନାହିଁ ସେ ହୃଦ ରିକ୍ତ !

'ଅପମାନେ ପୁଣି ଅମ୍ନ ନିର୍ଯାତନେ,
ମରେ ଯେ ନିଃସ୍ୱ ଏ ଶିବ ସୃଷ୍ଟି ଦଳ,
ମୈତ୍ରୀ କରୁଣା ଭର ବିକୃତ ମନେ,
ତୁମର ଅଶିଷ ତା ଶିରଷି ପଡ଼ୁ ଝର !

ବିଲୋଳ ରସନା ଦଂଷ୍ଟ୍ର-କରାଳ-ମୁଖ
ଦେବତା ଅସନ ଅବର ଅଜ ଯେ ରୁଷ
ମାନବ ଶବେ ନିବସି ଅଣେଇ ଭ୍ରାନ୍ତ
ଶାନ୍ତ କର ହେ, ସୃଷ୍ଟିରେ ଅଣ ଶାନ୍ତ !

ବହାଇ ଦଅ ତା ଶୁଷ୍କ କପୋଳେ ଲୁହ,
ଜୀର୍ଣ୍ଣ ବିକଳ ମୂକ ଏ ମାନବ ଲଗି, .
ତୁମ ଅଶ୍ରୁରେ ତା ପରାଣ କ୍ଷତ ଧୁଅ,
ଚିର ଦରିଦ୍ର କରୁଣ ନେତ୍ରେ କହ ତୁମେ ରହ ଜାଗି !

ନିଭିନାହିଁ ଯାର ରୁଷ ବିକଟ କ୍ଷୁଧା
କହ ଯାଇଁ ତାକୁ ଗୃହ ସମୂଳ ହାନ—
ମରଇ ମାନବ ପଥେ ଘାଟେ ଫାଟେ ମୁଧା !
ସବୁ ତା ପୁଣ ରକତରୁ ନୁହେ ଭିନ ।

"ସୁପ୍ତ ଦେବତା !" ପୀଡ଼ିତ କଣ୍ଠେ ବାଜେ;
କାତର କଣ୍ଠେ କବି କହେ "ପ୍ରଭୁ ସୁପ୍ତିତ ନାହିଁ ସାଜେ ?"
"ଅଜ ଏ ଦୁଃଖ ଦୁର୍ଦ୍ଦିନେ ଉଠ ଜାଗି !"
"ପଶୁ ସମ ମୂକ ନିପୀଡ଼ିତ ଜନ ଲାଗି !"



## ଖଣ୍ଡିତା

ଆଜ କାହା ଲଗି ଯତନେ କବରୀ ରଚନା ?
କୁସୁମ ଭୂଷଣେ ନାହିଁ ତଳେ ଆଜ ବାସନା,
ରଖ ସଖି ତୋର ମଲ୍ଲୀ କରବୀ ଯୂଥିକା,
ମରଣର କୋଳେ ମୁଦେ ମୁଁ ନୟନ ଲତିକା !
ପୋଛି ଦିଅ ସହି ଲକ୍ଷାରସ ମୋ ପୟରୁ,
ବଧୂଲର ରାଗ ନିଭାଇ ଦିଅ ମୋ ଅଧରୁ ।
ନ ରହିଁଲ ଫେରି ପ୍ରିୟତମ ଯେବେ ଥରେ ଗୋ
ଜାଣି ଜାଣି ଯେବେ ହାଣିଗଲ ମରମରେ ଗୋ
ସନ୍ଧ୍ୟା ସମାନ ଯେବେ ଗଲ ଏଇ ପଥେ ସେ,
ଏତେ ନିଷ୍ଠୁର ଉଦାସୀନ ସହି ସତେ ସେ ।
ବାତାୟନ ପଥେ ଚାହିଁଥିଲି କେତେ ସରାଗେ,
ଶ୍ରବଣ କୁସୁମ ଖସି ପଡିଲା ଯା ତା ଆଗେ,
ଲଜେ ଅଭିମାନେ ହୃଦୟ ହୁଏ ଗୋ କରତ;
ନ ରହିଁଲ ଯାହା ନ ଶୁଣିଲ ଥରେ ଆରତ ।



## ଦୂରର ଯା ଥିଲା

ଦୂରର ଯା ଥିଲା ଅନ୍ତରେ ଆଜ ପ୍ରିୟ
ଉତ୍ସବଦୀପ ମନ୍ଦରେ ଜାଳିଦିଅ ।
କାହିଁକି ଶୋଚନା ? ଅଶ୍ରୁ ପୋଛ ତୁ ଦେବ,
ଅନ୍ତରେ ତୋର ନିତ୍ୟ ଅମର ଛବି !

ଗାଅ ଗାଅ ତୋର ନବ ସଙ୍ଗୀତ
ସେ ପରଶ ଅନୁଭବ ।
ଶତ ବସନ୍ତ ଉତ୍ସବ ତୋର ପ୍ରାଣେ,
ଶରତ ପ୍ରଭାତ ତୋ ପୀରତି ଅଭିସାନେ
ଢାଳଇ ଅଲେକ, ଶୁଭ୍ର ଶେଫାଳି ଫୁଲ !
ଆଜ ଅନନ୍ଦ ପୀରତିର ନାହିଁ ତୁଲ !
ବିରହ ମିଳନ ଏକାକାର ଆଜ
ପରଶେ ହସଏ କୂଳ ।
ମୃତ୍ୟୁ ଅଙ୍କରେ ଅମୃତେ ଗଲା ମିଶି,
ଜୋଛନା ହାସରେ ମିଶିଗଲା ଅମାନିଶି,
ବାଧା ବନ୍ଧନ ସବୁ ଗଲା ଆଜ ତୁଟି,
ମଉଳିଲା ଅହା ସକଳ ଭ୍ରାନ୍ତ ସୃଷ୍ଟି ।
ପୀରତି ପୂର୍ଣ୍ଣ ଅଲୋକେ ହସଇ
ପରଶେ କମଳ ଫୁଟି !

[ ୧୯୩୧ ]



## ବରଷା ଆସିଛୁ ଦୁଆରେ—

ଅଜ, ବରଷା ଆସିଛୁ ଦୁଆରେ
ଅଙ୍କ ଲେଢ ରଚିଲା ନୃତ୍ୟ ନବୀନ
ତୋର, ଅନ୍ତରେ ପୁଣି ବାହାରେ ।
ଅଜ ମରୁଭୂମେ ଜୀର୍ଣ୍ଣ ଏ ଦେଶେ,
ଚିର ମଙ୍ଗଳ ସ୍ରଷ୍ଟାର ବେଶେ !

ବାଙ୍କର ମରଣ ସଞ୍ଜିବନୀ
ତା ବାଣୀ କବ ତୁ ତୁହାଁରେ ।୧।
ଜୀର୍ଣ୍ଣ ବୃକ୍ଷ ଧ୍ୱଂସରେ ଅଙ୍କ
ନବୀନ ଜୀବ ସେ ସଞ୍ଚାରେ ।
ଶାନ୍ତ ଜଦକ ମରଣରେ ତାଲ,
ଚର ବୈରାଗୀ ଦୂରେ ଯାଏ ଚାଲ
ଚର ଅନନ୍ଦ ନିର୍ବିକାର ସେ
ଗୁହେଁ ନାହିଁ ଫେରି କାହାରେ ।୨।
ଶୁଣି ଅଗମନୀ ବିଶାଳ ଶୂନ୍ୟେ
ଉଠେ ବିଶ୍ୱର ଛନ୍ଦ,
ବୃକ୍ଷ ଲତିକା ନୀରବ ଶୈଳ—
ତଟିନୀ ଚଞ୍ଚଳ ଅନ୍ଧ !
ମଟରେ, ମୃତ୍ୟୁର ଅବସାଦ ।
ତାର, ସଙ୍ଗୀତେ ଫୁଟେ ଶୈଳେ କୁସୁମ
ଶୂନ୍ୟରେ ପରମାଦ !
ଅଟେଗୋ ମଲ୍ଲିକା ମାଲତୀ ଚମ୍ପା
ରଜନୀଗନ୍ଧା—ତା ଅନୁକମ୍ପା
ଲାଗିଚ କି ମମ ଦଗ୍ଧ ହୃଦୟେ
ଜହନା ମିଳବ ବାହାରେ । ୩ ।
ସ୍ନିଗ୍ଧ ଶ୍ୟାମ ଶୀତଳ ସ୍ପର୍ଶେ
ଉଜ୍ଜ୍ୱଳ ହେବ ପୁର,
ଜଞ୍ଜାଳ ଗ୍ଳାନ ଦୂର,
ଅଜ ବିଶ୍ୱର ପ୍ରୀତି ଅନନ୍ଦେ
ନିମେଷେ କରବ ଯୂର । ୪ ।

ସୌଧ ଶୀର୍ଷେ ତନ୍ୱୀ ସଜଳ—
ନୟନେ ପୂର୍ଣ୍ଣ ଆଶା
ପୂଛାଇଲା କିଏ ଶୁଷ୍କ ଗୃତଳ—
କିବା କଣ୍ଠର ଭାଷା ?
ଆସ ହେ ବରଷା ବିଶ୍ୱ-ଜୀବନ,
ବିହ୍ୱଳ କିବା କରିବ ବରଣ,
ନବୀନ ହେଉ ହେ ସକଳ ମଳିନ
ଅରୂପ ବିଶ୍ୱବିହାରେ;
ଆଜ, ବର୍ଷା ଆସିଛି ଦୁଆରେ ।
[ ୧୯୩୬ ]



# ଅଭିସାରିକା

ହସଇ ଜୋଛନା ବହଇ ମଳୟ ମନ୍ଦର,
ବକୁଳ ଗନ୍ଧେ ସକଳ ଭୁବନ ଅଧୀର;
ଧରୁନାହିଁ ମନ ଘରେ ଢଳେ ଆଜ ସଜନି,
ଡାକେ ଅବା ଦୂରେ ମୁଗ୍ଧ ଆକୁଳ ରଜନୀ,
ଡାକେ ତା ବଂଶୀ ସୁଦୂର ତମାଳ କୁଞ୍ଜେ;
ଡାକଇ ଅଧୀରେ ମରେଁ କୁଳବାଳା ମୁଁ ଯେ ।
ପୁରଜନେ କାଲି ଦେବେ ନାହିଁ ମୋତେ ବାସ,
ବାଧଇ ଆଜ ଗୋ ନିୟତିର ଉପହାସ ।
ରଣ ରଣ ସହ ରୁଣିତ ନୂପୁର ଚରଣୁ
ଆସେ ପୁଣି ଡାକ ସ୍ନିଗ୍ଧ କୁଞ୍ଜ କାନନୁ,

କବରୀ-କୁସୁମ ଶିଥିଳ କି ସହି କହନା ?
ମନଲୁଣ୍ଠି ଅବା ଗଣ୍ଡେମକରୀ ରଚନା ?
ସେତ ରୂପ ଖଣି ବିଶ୍ୱ ହେବ ଟୋ ଦଗ୍ଧ,
କ୍ଷୁଣ୍ଣ ମୋ ରୂପ ଯୋଗ୍ୟତାର କି ସହି ?
ଯିବ ଯିବ ସହି ଅକୁଳତା ତଳେ ସହେନା;
ତୀବ୍ର ସେ ଡାକେ ଘରେ ମନ ଅଭ ରହେନା ।

[୧୯୩୧]

---

## କାରାବାସ-ସ୍ୱପ୍ନ

୧— ଦୂର କାରାବାସେ ମଧୁର ତାହାର ସ୍ମୃତି,
ନିଶବଦ ରାତେ, ସଙ୍ଗୀତ ଅନୁଭୂତି,
ଜୋଛନା ଅଲେକେ ରଜନୀଗନ୍ଧା ବାସ,
ଅତୀତ ଜୀବନ ଅମର ମଧୁର ପ୍ରାସ ।
ଦୂର ପରବାସୀ, ହେ ପଥିକ ରହ ରହ !
ଦେଖିଛ କି ତାକୁ କେବେ ଏ ଜୀବନେ କହ ?
ଜ୍ୟୋତ୍ସ୍ନାସମ ତା ନୟନ କରୁଣ ବିଭା,
ତା ଅଧର ହସ ଯେସନେ ତରୁଣ ଦିବା,
ତା ରୂପ ମାଧୁରୀ ପିଇଛି ହୋଇଛି ଧନ୍ୟ,
ମରମୁଁ ଅମର ପଦବୀରେ ହେଲ ଗଣ୍ୟ ।
ଦେଶର କାଳର ମହା ବ୍ୟବଧାନ ହାଣି
(ସେ ମୋ) ଜାଗ୍ରତ ପ୍ରାଣେ ଅଶ୍ରୁ ଜଡ଼ିତ ବାଣୀ !
ପ୍ରଳୟ ତମିରେ ଉଜ୍ଜ୍ୱଳ ଶିଖା ସମ,
ସକଳ ପ୍ରିୟର ମୋର ସେ ଯେ ପ୍ରିୟତମ ।

୨— ଭୁଲିଯିବ ତାକୁ ? ଭୁଲିବ କେମନେ କହ ?
ମୃତ୍ୟୁକୁ ହାଣି ରୂପ ତାର ଅହରହ—
ସତ୍ୟ ସମାନ ପ୍ରତିଭାତ ନିଶ୍ଚି ହବ !
ଜୀବନ ଅଲେଖେ ଅମର ପଦ୍ମ କବା !
ଗଲଣି ସେ ଭୁଲ ? ପଡ଼େ ନାହିଁ ଥରେ ମନେ ?
ନାହି ମୋ ଶୋଚନା କହି ଦେବ ତାକୁ ତମେ—

ଭୁଲିବାକୁ ହେଲେ ବଢ଼ିଯାଏ ମୋର ଶ୍ୱାସ,
ଅପଣାକୁ ଅବା କରେ ମୁହିଁ ଉପହାସ ।
କୋକିଳ କଣ୍ଠେ ଦୂରୁ ସେ ସେ ଅସେ ଭାସି,
ତାର ଲାବଣ୍ୟ ବହେ କୁଶଳୟୁ ସୃଷ୍ଟି,
ଦୂର ବାତ୍ୟାରେ ମଳୟୁ ଅଣେ ତା ସ୍ପର୍ଶ,
ମାଧବୀ ଜୋଛନା ତାର ପୀରତି ଆଦର୍ଶ ।
ଭୁଲ ଯାଉ କହୁ ନିଶୀଥ ସ୍ୱପନ ପର
ନିଃସ୍ୱ ରତନ ସ୍ମୃତି ସଦା ଥିବ ଧର ।

୩— ମର୍ତ୍ତ୍ୟ ମାନବ କି ବୁଝି ଜୀବନ ବ୍ୟଥା ?
କହିବ ତରୁଣ ଜୀବନର ଚପଳତା !
ଯୌବନ ତୁଲେ ସକଳ ବିକାର ଶୂନ୍ୟ,
କାଳର ପରଶ ସକଳକୁ କରେ ଧୂର୍ତ୍ତ ।
ତା ରୂପ ଅଲେଖେ ପରିଣତି ଥରେ ମାଜ,
ମାଧବୀ ଜୋଛନା ସଙ୍ଗୀତ ତାରେ ବାଜ,

ଭୁଲିଯିବା ତାକୁ ଭୁଲିବା ଜୀବନ ସଖା,
ଅଶ୍ରୁ ସାଗରେ ସ୍ନିଗ୍ଧ ସେ ନୀରବତା !
ଚିର ତୃଷାର୍ତ୍ତ ପୀୟୂଷ ସାଗର ଲୁହିଁ—
ଫେର ଆସିବାର ସମ୍ଭବ ଅବା କାହିଁ ?
ପୂର୍ଣ୍ୟ ମାଧୁରୀ ଲୁଣ୍ଠି କହ କାହିଁ ତୃପ୍ତି ?
ସଙ୍ଗୀତ ପଦେ ଶୁଣି ଆସେ କାହୁ ସୁପ୍ତି ?
ଲୁଣ୍ଠିଛି ସେ ଥରେ ଯୌବନ ରୂପ ରସ
ଲୁପ୍ତ ଧନ୍ୟ ଜଳି ପୋଡ଼ି ଅହର୍ନିଶ !

୪— ସନ୍ଧ୍ୟା ଆଲୋକେ ସ୍ନିଗ୍ଧ ତାରକା ଫୁଟେ !
କମଳ କାନନେ ଫୁଟେ ଅଗଣିତ ଫୁଲ,
ମଙ୍ଗଳ ଉଷା! ନିଶୀଥ ଶଯ୍ୟନ୍ତୁ ଉଠେ,
ନ ଦିଶଇ କେହୁ ତା ରୂପର ସମତୁଲ !
ଲକ୍ଷ ତାରକା ତା ରୂପେ ଲଭିବେ ଲାଜ,
ସୃଷ୍ଟିର ଉଷା ଶଙ୍କିତ ଦେଖି ବ୍ୟାଜ,
ତା ଚରଣ ତଳେ ଲୋଟିବାକୁ ଶତ ଫୁଲ,
ଏ ପରାଣ ସମ ନିରତରେ ସମାକୁଳ !

ଶାରଦ ଗଗନେ ନୀରବ ସନ୍ଧ୍ୟା ପର,
ତା ଅନାଉଣିରେ ଜୋଛନା ଉଠଇ ଥର,
ତାରକା ଖଚିତ ନୀଳ ନଭ ଜଉଘା;
ଝାଣି ଝିରେ ଆସେ ସିନ୍ଧୁ ବକ୍ଷେ ଚଳି ।
ମଙ୍ଗଳ ରୂପ ପୂର୍ଣ୍ୟ ଅଧର ହାସ !
ମରିବାକୁ ତହିଁ ଜନ୍ମ ଚିର ଅଭିଳାଷ ।

୫—ଯୌବନ ଶିଖା କ୍ଷୁଣ୍ଣ କରଇ ଜରା,
ତରୁଣ ସ୍ୱପ୍ନ ପଶ୍ଚାତେ କାଳ ପରା,
ପରିହାସ କରେ ବିଦ୍ରୂପ ଭରା ଅଙ୍ଗି ?
ଜୀବନ ସ୍ୱପ୍ନ କେତେ ରହିଯାଏ ବାକି !
ଶୁକ୍ଳ ଧବଳ ସ୍ନିଗ୍ଧ ଚିକୁର ଦାମ,
ସକଳ ଶୋଭାର ମୃତ୍ୟୁ ନିୟୁତ ବାମ;

ମଉଳି ପଡ଼ଇ ସଜଳ ନେତ୍ର ବିମ୍ବା,
କାଳ ଦୁର୍ଦ୍ଦିନେ ଯେସନେ ତରୁଣ ଦିବା ।
କାନ୍ତ ଅଧର ଜବା ପାଣ୍ଡୁର ଦଶେ,
ପୀୟୂଷ ହାସ୍ୟ ମୃତ୍ୟୁ ତମିରେ ମିଶେ !
ରୂପ ପାରାବାରେ ଉଏଁ ନା ତାରକା ଶତ,
ଉତ୍ତର ବାଅ ଅନ୍ତର କରେ କ୍ଷତ,
ସବୁ ନଶ୍ୱର ତା ଦେଖୁଁ ପଡ଼ିଲେ ଝରି,
[ଜାଗେ] ପ୍ରୀତି ଅମୃତ ଶୁକ୍ର ତାରକା ସରି !

୬—ହେ ପଥିକ ଯେବେ ବୁଝି ନାହିଁ ଥରେ ପ୍ରୀତି,
ଶୁଣି ନାହିଁ ଯେବେ ନୀରବ-ନୟନ-ଗୀତି,
ଲଭି ନ ବାସନା ପୁଣ୍ୟ ପୀରତି ବିମ୍ବା,
କେମନେ ଜାଣିବ ଜୀବନାମୃତ କିବା ?
ପ୍ରାଣ ପାରାବାରେ ଗହନ ମୃତ୍ୟୁ ଭେଦ,
ପୀରତି ପଦ୍ମ ହସଇ ତମିର ଛେଦ,

କଳପନା ନୁହେଁ, ସତ୍ୟ ସେ ଅନୁଭବ,
ଜୀବନ ମୃତ୍ୟୁ ସକଳର ଗୌରବ ।
କାଳର ପରଶେ ବଢ଼ଇ ପୀରତି ଆୟୁ
ଅଭିନବ ରୂପ ଜରି ବହୁଅଣେ ବାହୁଁ,
ଯା ଲାଗି ନିଃସ୍ୱ ଜୀବନଟି ହୁଏ ଧନ୍ୟ
ପୌଷେ ପୁଷ୍ପ ହସିତ ବୃନ୍ଦାରଣ୍ୟ ।
କହୁକହି ତାକୁ ଭେଟିଲେ ତା ଲାଗି ପରି
ଜୀବନର ଛନ୍ଦ ସହଜେ ପଡ଼ଇ ଧରି !

୨—ଦୁର୍ଦ୍ଦିନ ଶତଶିର ପରେ ଯାଏ ବହି,
ଅନ୍ତର ବ୍ୟଥା ଅଶ୍ରୁରେ ନୁହେ କହି,
କ୍ଷିପ୍ର ସିନ୍ଧୁ ପ୍ରଳୟେ ଉଠିଛି ମାତି,
ସୁରଇଁ କାହିଁକି ଶାରଦ ଶୁଭ୍ର ରାତି ?
ଏ ଜୀବନେ ଯାର ପାହିଲା ସ୍ୱପ୍ନ-ନିଶା,
ପୀରତି ପୀୟୂଷେ ଗରଳ ହୋଇଛି ମିଶା,
ନିଠୁର ନିୟତି କରେ ଯାକୁ ଉପହାସ,
ଅତୀତର ସ୍ମୃତି କାହିଁ ପାଇଁ ଦିଏ ତ୍ରାସ ?

ଶୁଖଇ କଣ୍ଠ ! ନ ମିଳେ ସଲିଳ କଣା !
ଅନ୍ତର ସ୍ତବକ କାହିଁପାଇଁ ତେବେ ବଣା ?
ମରଇ ଅକୁଳେ ମାଧବୀ ଜୋଛନା ଝୁରି,
ଅଶ୍ରୁ ସାଗର ଅନ୍ଧାରେ ଉଠେ ଫୁଲି;
ମଳୟର ମୋହ ନିମେଷକେ ହେଲା ଦୂର
ମରଇ କାହିଁକି ବିଜନ କାସାରେ ଫୁଲ ?

୮— ଦେଖିଛ କି ସତେ ରକ୍ତ ମୋ ହାସଡଳେ,
ସମର କାହାଣୀ ଅଗଣନ କ୍ଷତ ଜଳେ ?
ସଂଗ୍ରାମଲାଗି ସୈନିକ ବେଶେ ଉଭା ?
ଦର୍ପେ ଦମ୍ଭେ ହସଇ ତରୁଣ-ଯୁବା ?
ଭେଟାଇଛ ମୋତେ ? ତହିଁ ଅବା କେଉଁ ଫଳ ?
ଜାଣେ ସମ୍ବଳ ଏ ମୋର ଅଶ୍ରୁଜଳ !
ସମର ଅନ୍ତେ ପୁଣ୍ୟ ଏ ମୋର କ୍ଷତ
ବହିଯିବ ତାକୁ ଲକ୍ଷ ତାରକାବତ !
ତେଣୁ ଗୋ ଶୂନ୍ୟ ଗୌରବ ଅବକାଶେ
ଭରଇ ନୀରବେ ତୀବ୍ର ମୋ ଉପହାସେ ।
ଶାନ୍ତ ସିନ୍ଧୁ ଶୂନ୍ୟକୁ ରହେ ଚାହିଁ,
ଜୀବନର କିବା ହାନି ଲାଭ ପୁଚ୍ଛେନାହିଁ,
ଦୁଃସହ ଭାର ବହିବା ଧରମ ଜାଣେ,
ଅଧରେ କରୁଣ ହାସ୍ୟ, ଶୋଣିତ ପ୍ରାଣେ !

× × ×

୯— ହେ ପଥିକ ଯେବେ ତୁମ ତୁଲେ ହେବ ଦେଖା,
କହିବ ସେ ଯେ ମୋ ମର୍ମେ ରୁଧିରେ ଲେଖା ?
ଜ୍ୱଳିବ କେସନେ ମରଣ ମୂହୁର୍ତ୍ତ ଅବା;
ଜଗତେ ପଛକେ ବସ୍ତୁ ଅପବାଦ ସଭା !
ପ୍ରୀତି-ଅପବାଦ-ଅଶ୍ରୁ ପରମ ଲାଭ,
ଅକୂଳ ସିନ୍ଧୁ ବକ୍ଷେ ଏକଇ ନାବ,

ଥିଲେ ଯେତେଦୂରେ ପ୍ରୀତି-ସୁଧାଲାଗି ପିନା—
ରହୁଛୁ ଜୀବନ ? ସୁନ୍ଦରର ସୃଷ୍ଟି ବୀଣା ?
ସକଳ ଅବଳ ଊର୍ଦ୍ଧ୍ୱେ କମଳ ଫୁଟେ,
ସ୍ୱରଣେ ବନ୍ଦୀ ପରାଣ ଧ୍ୱାନ୍ତ ତୁଟେ ।
ଗଗନର ତାରା ଦୂରେ ! ଦୂରେ ! କେବା ହାନ ?
ସକଳ-ଦୂରତା ଦଳେ ଅନ୍ତର ବାଣୀ !
ସୁଦୂରର ଯାହା ସଫଳ ନିକଟେ ଆସି,
କି ଫଳ ଭସ୍ମ ବାସନାକୁ ପରକାଶି ?

[ ୧୯୩୩ ]



# * ବୈଧବ୍ୟ

୧— କହ ନାହିଁ ତାକୁ ଦୈବର ଅଭିଶାପ,
ସ୍ମର ଜୀବନର ଶତ ଦୁଷ୍କୃତ ପାପ,
ଶ୍ରାବଣ ସରିତ ସମାନ ବହୁ ଗୋ ଲୁହ,
ଚିର ଅବିଚଳ ଶଙ୍କିତା ଆଜି ନୁହ,
ଯେ ଅନଳ ଜଳେ, ଲେଲିହାନ ସେ ଯେ ଶିଖା !
ସୃଷ୍ଟିର ସେ ଯେ ମଙ୍ଗଳମୟ ପିତା,
ଭସ୍ମ କରଇ ସକଳ କରଇ ଦଗ୍ଧ,
ସବୁ ନଶ୍ୱର ସକଳ ଏ ମାୟାଲବ୍ଧ !
ପ୍ରଣମ ପୟରେ ବନ୍ଦନା ଯାଅ ଗାଇ
ଚିର ଶଙ୍କିତା ସଙ୍କୋଚ କାହା ପାଇଁ ?

* କନିଷ୍ଠା ଭଗିନୀର ବୈଧବ୍ୟୋପଲକ୍ଷେ ।

ଦଗ୍ଧ ସକଳ ଦଗ୍ଧ ! ଅନଳ ହସେ,
ଜୀବନେ ନିତ୍ୟ ଅକ୍ଷର ଯାହା ବସେ,
ଅବିଚଳ ଅଗୋ ନିଅ ବହ୍ନିର ଦୀକ୍ଷା
ଜୀବନ ଦୁଆରେ ପୂର୍ଣ୍ଣ ଆଜ ତୋ ଭିକ୍ଷା !

୨—ବାଷ୍ପ-ତିମିର ଅବସାଦ ଛାୟା ଦଳ,
ହୃଦୟ ଅତଳେ ସବିତା ଉଠିଲେ ଜଳି !
ଚିର ସୁନ୍ଦର ଅନ୍ତରେ ବାସ୍ତବସି
ସେ ଆଲୋକ ତେଜେ ନିରେଖିଯାଏ ଗୋ ମନ !
ତେଜ ଆଜ ତୋର ମର୍ତ୍ତ ଭୂଷଣି ମାୟା,
ଉଜ୍ଜ୍ୱଳ ତେଜେ ମରଇ ଜୀବନ ଛାୟା,
ଭଗ୍ନ ସକଳ ବିକାର ଶୂନ୍ୟ ବନ୍ଧ !
ସକଳ ଶାନ୍ତ ସୃଷ୍ଟିରେ ପବିସ ଛନ୍ଦ !
ଭିକ୍ଷୁଣୀ ଆସ, ଆସ ଗୋ ଶୂନ୍ୟ ହସ୍ତେ,
ଡାକଇ ଆଲୋକ ଜୀବନ ମୁକ୍ତି-ପଥେ !
ଦୀର୍ଘ ସେ ପଥ ? ଆସ ସଂଶୟ ତେଜି,
ଚିର ମଙ୍ଗଳ ଦୈବ ବିଧାନ ହେଜି,
ଆସ ଗୋ ଶାନ୍ତ ସୁନ୍ଦର ଯାଏ ବେଳ,
ସ୍ମର ସେ ଅନଳ ! ଅଶୋଭନ ଆଜ ଖେଳ !

୩—ନିଭ ଆସେ ଚିତା ! ଦିବ୍ୟ ସବିତା ଉଠେ !
ନବୀନ ସୃଷ୍ଟି କମଳ ଅବା କି ଫୁଟେ !

ରୌଦ୍ରରେ ଧୀରେ ସ୍ଫୁରଇ ସୃଷ୍ଟି ଗୀତ,
ଜୀବନ ଅଭ୍ରସେ ମୃତ୍ୟୁ ସଙ୍କୁଚିତ !
ଜାଣିଛୁ ଭଗିନି ରୁଦ୍ଧ କଣ୍ଠ ତବ,
ନ ଗାଇବ ତହିଁ ସଙ୍ଗୀତ ଅଭିନବ,
ଜୀବନ ଯେସନେ ଶୁଷ୍କ ବାସର-ଫୁଲ,
ନ ଥାଏ ସରାଗ ନାହିଁ ଛଳେ ତାର ମୂଲ !
ମାତର ବିଷାଦ ଦଗ୍ଧ କରି ଏ ପ୍ରାଣ
ଜୀବନ ପ୍ରଶ୍ନ ହୁଅଇ କି ସମାଧାନ ?
ଅଶ୍ରୁରେ ନାହିଁ ନାହିଁ ଗୋ ହର୍ଷେ ଶାନ୍ତି
ଅଲୋକେ ତମିରେ ଛୁଟେ ନାହିଁ କାହିଁ ଭ୍ରାନ୍ତି ।
ସ୍ୱାର୍ଥ ଦହନ ଅଭିମାନ ଅଜ ଜଣି
ଜୀବନର ପଥେ ଅସ ଂଗୋ ସନ୍ନ୍ୟାସିନି ।

୪—ଜୀବନର ପଥେ ଫୁଟିଛି କେତେ ଜାତି ଫୁଲ,
ହସଇ ଜ୍ୟୋତ୍ସ୍ନା କାହିଁ ତାର ସମତୁଲ,
ଅସଇ ରବି ଅସେ ଅଲୋକର ଦୂତ,
ପ୍ରଣୟେ ସହିତେ ଲାଗେ ବଡ଼ ଅଦଭୁତ—
ହସଇ ମୃତ୍ୟୁ, ନିରେଖି କୁସୁମ ବୃଷ୍ଟି;
ଏ ସକଳ ମେଳେ ବିକଶେ କାହାର ସୃଷ୍ଟି ?
କାହାର ବିଧାନ ମଙ୍ଗଳମୟ ବିଧି ?
କାହା ଇଙ୍ଗିତେ ସକଳ ଲଭଇ ସିଦ୍ଧି ?
ଅଲୋକ ତମିରେ ଏକାକାର ସାମ-ଗାନ
ମୃତ୍ୟୁ ଜୀବନେ ଅବିନଶ୍ୱର ପ୍ରାଣ !

ମଳିନ ସ୍ୱାର୍ଥ ଲଭେ ନାହିଁ ତହିଁ ସ୍ଥାନ,
ବ୍ୟର୍ଥ ଅଶ୍ରୁ ଅବସାଦ ଅଭିମାନ,
ବହ୍ନିମୟ ତାର ପୁଣ୍ୟ ବିଧାନ ଶିରେ,
ସ୍ମର ସେ ଅନଳ ! ନିଭିଅଛେ ଚିତା ଧୀରେ !’

୫— ଏ ଜୀବନ ପଥେ ଗଲେଣି ଗୋ ଯେତେ ଚଳି,
ଜନନୀ ବସୁଧା ଶୁଣି ନାହିଁ କାର ଅଳି,
ଅକାଳେ କୁସୁମ ମଉଳି ପଡ଼ିଛି ଝରି,
ତରୁଣର ଗୀତ କଣ୍ଠେ ଯାଇଛି ମରି,
ନିଭିଯାଏ ରୂପ ଯୌବନ କରି ମରୁ
ଝାଉଁଲେ ପୀରତି-ଲତିକାଶ୍ରୟ-ତରୁ;
ସକଳ ମାନବ ବନ ଅଜଗର ପ୍ରାୟେ
ବରଇ ନୀରବେ ଶୂନ୍ୟକୁ ଚାହିଁ ଗାଏ ?
“ପରାଣ ନିଃସ୍ୱ ଜୀବନଦେବତା ସ୍ୱାମୀ
ଚିର ନଟବର ସକଳ ଅନ୍ତର୍ଯ୍ୟାମୀ,
ଶୂନ୍ୟ ସରବ ଅସ୍ତ୍ର ମୋର ଯେ ଶଶୀ,
ଶୂନ୍ୟ ପୁଲକେ ଭରସା ଯେ ତୋର ବଂଶୀ,
ବହିଲୁ ଚେତନା ନିଃସ୍ୱ କରି ଏ ପ୍ରାଣ,
ନାହିଁ ମୋ ଶୋଚନା—ସ୍ମରୁଛି ତୋ ପୀରତି ଗାନ !”

୬—ବହିଯାଏ କାଳ ଦିବସ ଦଣ୍ଡ ଲତା
ସନ୍ୟାସିନି ଗୋ ସ୍ମର ସେଅନଳ ଚିତା !

—୧୪

ଲୋତକ ଅଶ୍ରୁ କାହିଁ ତାର ଅବକାଶ ?
ପରବାସି ଅଗୋ ମିଳାଇଯାଏ ଯେ ହାସ !
ମୁକତର ଗୀତ ଶୁଣି ଶୁଣି ଅସେ ଦୂରୁ
ଶୁଭ୍ର ଅଙ୍ଗି ଅସ ଅନ୍ଧାର ପୁରୁ !

ସୌମ୍ୟ ମୂରତି ତବ ଶୌଚର ବେଶ,
ସନ୍ଧ୍ୟା ସମାନ ଶାନ୍ତ ରୁକ୍ଷ କେଶ,
ଦିବ୍ୟ ଦୃଷ୍ଟି ସ୍ଖଳିତ ନୁହେ ସେ ପାଦ !
ମରମେ ଅଶ୍ରୁ ଅନ୍ତର ଅବସାଦ !
ପୁଣ୍ୟର ବନ୍ଧୁ ! ଦେଖି ବିଜୟିନୀ ରୂପ,
ସଙ୍କୁଚିତ ଗୋ ସ୍ୱାର୍ଥ ବେଦନା ସ୍ତୂପ
ମାନବର ତେଜେ ମରଇ ମୃତ୍ୟୁ ଡରେ
ଧନ୍ୟ ଏ ଭୂମି ପୁଣ୍ୟ ଚରଣ ତଳେ ।



## * କରମର୍ଦ୍ଦନ

କାଳ ବୈଶାଖ ! ତପ୍ତ ତଟିନୀ ବାଲି ।
ଦଗ୍ଧ ପଥର ବୃଦ୍ଧ ନ ପାରେ ଚାଲି,
ଶୁଷ୍କ କଣ୍ଠ, ତୃଷା ଜଳୁଚି ଛାର,
ଜଳ ଅଟେଶ ଗୁହିଁ ପ୍ରାଣି କରେ ହାହାକାର !
ନସ୍ତ ଭୁବନେ କାହିଁ କେହି ନାହିଁ ଦିଶେ,
ମୃଗ ତୃଷ୍ଣିକା ଜଳବେଣୀ ନୁହେଁ କି ସେ ?

---

କାଲ୍‌ଟର୍ କଚେରୀରେ ମାମଲ୍ ଲଢିବା ଆଶାରେ ଅସୁଥିବା ଜନୈକ ବୃଦ୍ଧ କାଠଯୋଡ଼ୀ ବାଲିରେ ଗ୍ରୀଷ୍ମ ତାପ ସହି ନ ପାରି ପ୍ରାଣ ହରାଇଥିବା ଘଟଣାକୁ ଲକ୍ଷ୍ୟକରି ।

ଝଙ୍କିଲ ସେନ୍ଧ୍ୟ ଶୂନ୍ୟ ସିକତା ପଥେ,
ଗ୍ଭଲନ୍ତି ବୃଦ୍ଧ ଅଣ ତା ଅଗ୍ରଗତେ ।
ଦୁର୍ବଳ ଶିର ଖରେ କରେ ଝାଇଁ ଝାଇଁ
ଘନ ଅନ୍ଧାରେ ଚକ୍ଷୁକୁ ଦଶେ ନାଇଁ,
ଅଗତ ମୃତ୍ୟୁ ଓଗାଳଇ ପଥେ ହସି—
"ବୃଦ୍ଧ ବନ୍ଧୁ ! କାହିଁ ଗ୍ଭଲଅଛ ଧସି ?"
ବକ ଦୃଷ୍ଟି ବୃଦ୍ଧ ଚକିତେ ଥୟ !
"ନ ପାରେଁ ଚହ୍ନି ! ଦେବ କି ହେ ପରିଚୟ ?
ବନ୍ଧୁ ? ବନ୍ଧୁ ! ଶୁଣିଛି କଣ୍ଠସ୍ୱର,
ଦୁର୍ବଳ ସ୍ମୃତି ଚେତାଉଛି ନୁହଁ ପର !"
"ମୃତ୍ୟୁ ମୁଁ ଚିର ଯୌବନ ରହେ ଜାଗି,
ତୁମ ପାଶେ ଅଜ ଅସିଛି ଯୁଦ୍ଧ ମାଗି !
ବିଜୟର ମୋହ ମାଦକତା କରେ ଲୁବ୍ଧ
ପ୍ରସ୍ତୁତ ହୁଅ ବୃଦ୍ଧ, ଦଅ ହେ ଯୁଦ୍ଧ !"
"ବନ୍ଧୁ, ହେ ଚିରଯୌବନ ! ମୁଁ ଯେ ବୃଦ୍ଧ,
ସ୍ଖଳିତ ଅଙ୍ଗେ ସମ୍ଭବ କାହିଁ ଯୁଦ୍ଧ ?
ପୁଣି ନାହିଁ ସ୍ପୃହା ! ଗୌରବ ମୋହ ଖର୍ବ !
ସପ୍ତସାଗର ଲଙ୍ଘିବା ତୁମ୍ଭ ଗର୍ବ !
ଦଅ ଦଅ କର, ଯାଉଛ କାହିଁକି ଖସି ?
କରମର୍ଦ୍ଦନ କରିବ ବୃଦ୍ଧ ହସି !"
"ସ୍ୱେଚ୍ଛାରେ ଯେଉଁ ବଶ୍ୟତା ସ୍ୱୀକାର,
ଯୁଦ୍ଧେ ବନ୍ଧୁ ପ୍ରୟୋଜନ କିବା ତାର ?
ବଢ଼ାଅ ସେ କର, କରମର୍ଦ୍ଦନ ଲଗି,
ହସ ମୋର ତୁଲେ, କି ହେବ ଯୁଦ୍ଧ ମାଗି ?

"ଯୁଦ୍ଧେ ରମିଛୁ ସକଳ ଜୀବନବ୍ୟାପୀ,
ନାଭିନାହିଁ କ୍ଷତ ଚିହ୍ନ ଯେ ଅଦ୍ୟାପି,
ହାସ୍ୟ ଉପୁଜେ ? ମାନୁ ନାହିଁ ତୁମ ମନ ?
ନାହିଁ ନାହିଁ ଅଜ ସଂଗ୍ରାମେ ପ୍ରୟୋଜନ ।"

"ମିଥ୍ୟା ଏ ଭାଷ ! ଶରୀର ବହୁଛ ବନ୍ଧୁ !
ରହିଁଥିବେ ପଥ ପୁତ୍ର-ପୁତ୍ରବଧୂ,
ବୃଦ୍ଧା ପତ୍ନୀ ବନ୍ଧୁ ସୋଦର କନ୍ୟା,
ତୁମର ସେବାରେ ହେବେ ଯେ ସକଳେ ଧନ୍ୟା,
କହିବେ ବୃଦ୍ଧ ଯାଇଛୁ ମାମଲ ଜିତ,
ଦୂର ପରବାସୁ ଫେରିଲେ ଲଭିବେ ପ୍ରୀତି ।"

ଭାଷଇ ବୃଦ୍ଧ "ବାକ୍ୟର ଅବକାଶ,
ନାହିଁ ଯେ ବନ୍ଧୁ ! ପ୍ରତିଦାନ ମୋର ହାସ !
ହାସ୍ୟ ଅଶ୍ରୁ ପଳାତ ପଦ ପ୍ରାସ,
ପତ୍ନୀ-ପୁତ୍ର ଦୂର ଏ ଯେ ପରବାସ,
ବନ୍ଧୁ ! ସକଳେ ଜଣାଇବ ମୋର ହାସ !"

ମୁଦିଲ ନୟନ ବୃଦ୍ଧ ସିକତା ଶେଯେ,
ନସ୍ତ ପଥିକ ବନ୍ଧୁକୁ କହେ "ଏ ଯେ,
ତୀକ୍ଷ୍ଣ ସୌରରଶ୍ମି ନ ପାର ସହି,
ବହୁଛୁ ରୁଧିର ବୃଦ୍ଧ ତେଜିଲ ମହୀ ।"



# ରମ୍ୟାରଲ୍ଁ

[ ବିଂଶ ଶତାବ୍ଦୀର ଫରାସୀ ଦାର୍ଶନିକ,
ମନୀଷୀ ଓ ଶ୍ରେଷ୍ଠ ଲେଖକ ]

୧— ଜୀବନ ତମିର ପଥେ ଧ୍ରୁବ ତାରାସମ,
ଉଦ୍ଭାସିତ ସଭ୍ୟତା ଜଗତ୍ ଅମୃତ ପରମ,
ପରମ ପୁରୋଧା ଅବା ତାହୁଛ ଅଶେଷ,
ସୃଷ୍ଟି ହିତେ ତୁମେ ରୁଦ୍ର ପିଇଅଛ ବିଷ !

ଅକ୍ଳାନ୍ତ ସୈନିକ ଭେଦ ଅନ୍ଧକାର ବ୍ୟୂହ,
ଅଗ୍ରସର ନିର୍ବିକାରେ ! ତୁଙ୍ଗ ମହୀରୁହ !
ଦୀର୍ଘପଥ ଅତିକ୍ରମି କ୍ଳାନ୍ତି ନାହିଁ ଜାଣ,
ଚିର ଅଗ୍ରଗତି ଦୀକ୍ଷା ଜାଣେ ସେହି ପ୍ରାଣ !

କେବଳ ଚାଲିବା ପଥ ! ଚାଲିବାରେ ମୁକ୍ତି !
ପାଥେୟ ସଙ୍ଗରେ ଶତ ଅତୀତର ସ୍ମୃତି !
ନାହିଁ ଅଶ୍ରୁ, ନାହିଁ ଖେଦ, ନାହିଁ ଅବସାଦ,
ଅନନ୍ଦ ହାସ୍ୟ ପ୍ରୀତିର ଭକ୍ତି ପରମାଦ—

ସବୁ ଏଡ଼ି ସତ୍ୟ ଏକା ହେବା ଅଗ୍ରଗତି !
ଯେନ ନିଃସ୍ୱ ପଥିକର ଅନ୍ତର ପ୍ରଣତି !

୨— ହେ ନିସ୍ୱଣ-ପରିବ୍ରାଜ କଣ୍ୱ ତପୋବନେ !
ସଦା ଧ୍ୟାନରତ ତପଃକ୍ଳିଷ୍ଟ ସେ ଆନନେ,—

ଅଙ୍କିତ କାଳର ରେଖା ! ଅନ୍ତର ବିଚ୍ଛିନ୍ନ,
ଶୋଣିତ ଅପ୍ଲୁତ । ନଭନାହିଁ କ୍ଷତ ଚିହ୍ନ
ସଂଗ୍ରାମର, ବିସ୍ମୃତ ବା ଅତୀତର ଗ୍ରାସ !
ଲାଗିଛି ମଳିନ ଓଷ୍ଠେ ବିଜୟୀର ହାସ !
ଅତୁଳ ମାଧୁର୍ଯ୍ୟେ ମୃତ୍ୟୁ ରହେ ଅବା ହସି
ମୁଖେ ଅମରତ୍ୱ ବାର୍ତ୍ତା ଜଗତେ ଚହଟି ।
ମୃତ୍ୟୁ ନାହିଁ, ମୃତ୍ୟୁ ନାହିଁ, ଅନ୍ଧକାର ଭେଦ,
ଅମୃତ ପରଶି-ସୂର୍ଯ୍ୟ ନିତ୍ୟ ଟଳେ ଖେଦ,
ପୁଣି ଜନ୍ମ ପୁଣି ମୃତ୍ୟୁ ଯାଏ। ନୁହେଁ ଶେଷ,
ବିକଶିତ ଲୀଳାପଦ୍ମ ସୁମଧୁର କ୍ଳେଶ ।
ଅନତ ସେ ଦୀର୍ଘ ବପୁ ନୁହେଁ ଭାଜିବାର,
ଦେଖ ଦୀନ ଅନ୍ନଦାତା ପ୍ରୀତ ନମସ୍କାର ।



## ପ୍ରଥମ ଆଷାଢ଼

ପ୍ରଥମ ଅଷାଢ଼ ଦୁର୍ଦ୍ଦିନ ଘନରାତ,
ତନ୍ଦ୍ରାନନ୍ଦେ ପୁଲକ ଉଠଇ ଗାତ,
ଗରଜି ବଜ୍ର କରଇ ଅଟ୍ଟହାସ,
ସ୍ନିଗ୍ଧ ଭୂମିରେ ପରବାସେ ମରେ ତ୍ରାସ ।

ଚମକେ ବିଜୁଳି ଘନ ଅନ୍ଧାରେ ପଶି,
ମିଳନ ଛଳେ ପୀରତି ନ ଦିଏ ଧରି,
ଉଜ୍ଜ୍ୱଳ ହାସେ ଗଗନେ ଦିବ୍ୟକାନ୍ତି,
ଫୁଟିକରି ଅବା ସାଧକ ପରମ ଶାନ୍ତି ।

ମନ୍ଦିରେ ତୋର ଜଳେ ନାହିଁ ଅଜ ଦୀପ,
ଝର ପଡ଼ୁଛ ତୋ ପୀରତ ପାଦପୁଁ ନୀପ,
ମଧୁର ମାତର ଏ ରଜନୀ ଅଭସାର,
ମଧୁର ଅଜ ତୋ ଅନ୍ତର ହାହାକାର ।

ଶୂନ୍ୟତା ବାଧେ ? ଭର ତୋ ବ୍ୟଙ୍ଗ ହାସେ,
ବଜ୍ର ଯେସନେ ଗର୍ଜେ ତମିସ୍ରାକାଶେ,
ଶୀତଳ ପବନ, ଶୀତଳ ଦହନ ଅଜ,
ଦୂର ଗଗନର ନିଶ୍ୱାସ ତୋର ।
ମରମେ ଉଠଇ ବାଜ !

ନୀରବେ ଫେରଇ ନୀରବ ନୟନ ଗୀତ
ଶୂନ୍ୟତା ଭରେ ଦୂର ପୂର୍ଣ୍ଣର ପ୍ରୀତ,
କି ଭାବନା ତୋର, ହେ ପଥିକ ପରବାସୀ ?
ଡାକଏ ତୋ ପଥ ସୁଦୂରର କାଣହସୀ ।

ଦୂର୍ବହ ଭାର ପଡ଼ିଛ ତୋର ରଣି ଅସ,
ଅମୂଲ୍ୟ ତୋର ପାଥେୟ ବ୍ୟଙ୍ଗହାସ,
ସବୁ ସଙ୍କୋଚ ଜୀବନ ଦୈନ୍ୟ ମସୀ,
ବଜ୍ର ସନ୍ଧତେ ଉଡ଼ୁ ରେ ଉଡେ ହସି ।
ବ୍ୟଙ୍ଗ ହାସ୍ୟେ ଉଜ୍ଜ୍ୱଳ ଉଠୁ ସେ ହୃଅ,
ହସି ଉଠୁ ଅଦ ନିଃସ୍ୱ ବରକ୍ଷ ପ୍ରିୟା,
ଅଜ ଅନ୍ଧାରେ ପୂରୁ ପରାଣର ପ୍ରୀତ,
ବନ୍ଧନ ଭୁଲ ସ୍ଫୁରୁ ନବା କଣ୍ଠ-ଗୀତ ।



## ପ୍ରଭାତୀ

ଦୁର୍ଦ୍ଦିନ ତମ ହାଣି ଫୁଟିଉଠେ ତାର ବାଣୀ
ଜାଗ୍ରତ, ଜାଗ୍ରତ ପାନ୍ଥ,
ସୁପ୍ତି ତୋ ନାହିଁ ସାଜେ ବନ୍ଧନ ମୋହ ଭାଜେ
ମରଇ ଅଳେକେ ଯହିଁ ଧ୍ୱାନ୍ତ ।
ଅସରଳ ସବଳ ତୋ ସରଳ,
ଅମୃତ ହେବ ଅଜି ଗରଳ,
ଅନ୍ଧାର ଭେଦ୍ଦ ଚାଲ ଅଚଳ !
ଅଧ୍ୱାନ ଅଶେ ଅବିଶ୍ରାନ୍ତ !
ଜାଗ୍ରତ, ଜାଗ୍ରତ ପାନ୍ଥ ।
ଅସ୍ତ ସାଗର ପାରେ ଶତ ବିଫଳତା ହାଣି
ଉଇଁଛିରେ ଜୀବନର ସୂର୍ଯ୍ୟ !
କିବା ବନ୍ଧନ ଭୀତ ? ଗାଅରେ ବିଜୟ ଗୀତ
ମନ୍ଦ୍ରେ ଡାକଇ ତାର ତୂର୍ଯ୍ୟ;
ତୋଳି ଧରି ଉଠେ ତା ଧ୍ୱଜାରେ,
ତା ବିଜୟ ଦୁନ୍ଦୁଭି ବଜାରେ,'
କମ୍ପିବ ମରଣର "ମଜାରେ
ପଥ ତୋର ଯହିଁ ବସେ କାନ୍ତ !
ଜାଗ୍ରତ, ଜାଗ୍ରତ, ପାନ୍ଥ ।
ଖସିପଡ଼ୁ ଅନ୍ତରୁ ତୁଚ୍ଛ ଜଡ଼ତା ଭୀତ
ସନ୍ଦେହ ସକଳ କ୍ଳୀବତ୍ୱ,
ମିଥ୍ୟାର ମୋହ ଭେଦ—ମଙ୍ଗଳ ଆଶ୍ୱାସ

ଜୀବନେ ହେଉଚରେ ଅଜ ସତ୍ୟ ।
ଜଳଇ ତା ହୋମାନଳ ପୂର୍ଣ୍ଣ
ସକଳ ଅଶିବ ସବୁ ଘୃଣ୍ୟ,
ଭସ୍ମ କରେଖ ତହିଁ ସ୍ଫୂର୍ତ୍ତି,
ପ୍ରଣମି ଚଳ ତୁ ପଥେ ଭ୍ରାନ୍ତ;
ଜାଗ୍ରତ, ଜାଗ୍ରତ, ପାନ୍ଥ ।



## ଗ୍ରାମ୍ୟ-ପ୍ରଣୟ *

କହଇ ତନ୍ୱୀ "ତୁ ତୁ ଲଗୁ ନାହିଁ ଲାଜ ?
କି କହିବେ ଲୋକେ ? ଦିନଗୋଟା ଗଲା ଆଜ,
ପଥେ ଘାଟେ କେହୁ ଦେଖିନାହିଁ ତୁମ ଘର,
ଫଟା କପାଳକୁ କି ନଶାରେ ହେଲ ବାଇ !
"ବୋହୂ ଝିଅ ମୋତେ ଦେବେ ନାହିଁ କାଲି ବାସ,
ସହି ନୁହେଁ ଭଲେ ସେ ଠାପରି ପରିହାସ ।
ଗାଆଁ ପଧାନେ ଯେ ଗଲେ ଏଇ ପଥେ ଡାକି.
ଝଲାକବାଟିରେ ଦିଶିଗଲା ନାଲି ଅଖି ।
"ଭରିଟି ଗୁହିଁଲେ ଗଲନାହିଁ ତାଙ୍କ ପାଖେ,
ବାକୀ ମୂଲଗଣ୍ଡା ନ ଧାଇଁଲେ କାହୁଁ ଆସେ ?
ସଞ୍ଜଲଗି ଅସେ ପୋଡ଼ିଯାଏ ମୋର ମୁହଁ,
କାମଦାମ ଛାଡ଼ ନ ବସିବ ଦେହ ଛୁଁଅ !"
କହି ପ୍ରିୟା ଖେଳଖଞ୍ଜନ ଅଖି ଥିର,
ନବ ଅନୁରାଗେ ପୁଣି ଢଳଢଳ ନୀର,

ଝାଂପଇ ତରୁଣ ବାଳାସ୍ତୁ ତାର ଦେହ,
ଅତଳ ସାଗରୁ ସୁଗଭୀର ତାର ସ୍ନେହ ।
"କୁଟିର ଅଲେକ ଶୂନ୍ୟ ହୃଦୟ ରାଣୀ
ତାହାଙ୍କ ବସିଛୁ କେସତନ ପାରରୁ ଜାଣି ?
ପିଅଇଛୁ କେତେ କୋମଳ ଅଧର ସୁଧା,
ବକ୍ଷେ ଅସନ ଦେଇଛୁ, ତେବେ ତ କ୍ଷୁଧା—
ନିଭିନାହିଁ ତଳେ ପିପାସା ପରାଣ ରାଣି,
ଯେତେ ଗୋ ପିଇଲେ ଛଣା ସୁଧା ସେଇ ବାଣୀ,
କେଉଁ ରାଇଜର କବା ତୁ ନ ପାରେଁ ବୁଝି
ରୁହିଁ ତୋର ଅଖି ଅସେ ମୋ ନୟନ ମୁଦ ।
"ପରାଣ ବନ୍ଧୁ ଦୁଃଖୀ ହୃଦୟରାଜ !
ଅଭାଗିନୀ ମୁହିଁ, ଦଅ ନାହିଁ ଅଉ ଲାଜ ।
କିବା ମୋର ରୂପ ? ସଂସାର ରୂପଖଣି !
ଆକାଶର ତାରା ପାଇବ କି ତୁମେ ଗଣି ?"
"ରୂପେ ଗୁଣେ ତୁମ ପାଦକୁ ନୋହେ ମୁଁ ସର,
ତୁମେ କାୟା, ମୁଁ ଗୋ ତୁମରି ସେ ଛାୟାପର,
ତୁମରି ଗୁଣେ ମୁଁ ବାସିବି ଜଗତେ ସିନା,
ତୁମେ ମୋର ପ୍ରଭୁ ତୁମ ପଦେ ମୁଁ ଗୋ କିଣା ।
ସହିପାରେଁ ନା ମୁଁ ତୁମ ପଞ୍ଚରୂପ ହାନି
ବୁଲିଅସ ଢେରେ ଛାଡ଼ ମୋ ପଣତକାନି !"
"ଛାଡ଼ ତୋତେ ଏକା ଅଜରେ ପରାଣ ସହି,
କାହିଁ ଯିବାକୁ ତ ମନ ତଳେ ବଳ ନାହିଁ ।
ନୟନେ ଘୋଡ଼ାଇ ରଖିଛୁ କି ପରମାଦ,
ନ ଫେରେ ମୋ ଅଖି, ଚଳନାହିଁ ମୋର ପାଦ !"

‘ ଅସରନ୍ତ ସୁଧା ସାଗରକୁ ଖାଲି ଚାହିଁ,
ଲୋଡ଼ନ୍ତି ଆସିବା ଦେଖିନ୍ତୁ କାହାକୁ କାହିଁ ?
ପିଇବାକୁ ଗୋଟିଯାକ ଛନଛନ ମନ,
କେତେ କଥା ଭାବେଁ, କହିପାରେ ନାହିଁ ଧନ !
ସକଳ ଭାବନା ଭୁଲେ ମୁଁ ତୋ ଦେହବାସେ
ସତ୍ରୁ ପଡ଼ନ୍ତୁସ, ନିନ୍ଦା ନିବେ ସେ ହାସେ !”
“ଦ୍ୱ ଦ୍ୱନର ମୋହ ପରମାଦ୍ ମୋଚ ବନ୍ଧୁ
କି କରିବ ପୁଣି ସରିଗଲେ ଦ୍ୱନେ ମଧୁ ?
କାଲିପାଇଁ କିଛି ଥାଉ ! ବୁଲିଆସ ଯାଇଁ,
ଏତେବେଳେ ଗୋଠୁଁ ନ ଫେରିଲେ କିଆଁ ଗାଈ,
ଜଗୁରି ଯାଉଛି ସଞ୍ଜ, ଦେବି ମୁଁ ବତି ।
ପିବି ମୁଁ ପାଣିକି ପୁଣି, ଛାଡ଼ ମୋର କତି ।”
“ଅଙ୍ଗୁଳି ବସି ଗଣୁଛି କି ହେବ ଅବା ?
ବହୁବେଳ ବସି ଶିଖିଲ ଯେ ମୋର ଗଭା;
ଛାଡ଼ ହାତୁ ହାତ, ପିନ୍ଧେ ଶିଥିଳ ବାସ,
ମରିବାକୁ ତଳେ ଦେବ ନାହିଁ ଅବକାଶ ?”
ଏତେ କହି ପ୍ରିୟା ଉଠିଯାଏ ତରତର,
ବିହ୍ୱଳ ଯୁବା ଧରି ଝାଣେ ତାର କର,
ବିନମ୍ର ସୋହାଗ କଣ୍ଠେ “ରହନା” କହେ
“ରହଗୋ ଦଣ୍ଡେ ମନ୍ଦ ମରୁତ ବହେ !”
“ତୋ ପରି ଚନ୍ଦ୍ର ବୃକ୍ଷୁ ହସି ହସି ଅସେ,
ମଲ୍ଲୀ କେତକୀ ସମାନ ତୋ ଦେହ ବାସେ,
ଦୂରବଣୁ ଡାକେ କୋଇଲି ତୁହାଇ ତୋତେ,
ରହିତଳେ ଆଜ, ଛାଡ଼ି ଯାଅ ନାହିଁ ମୋତେ ।

"ଦର୍ଶନର ମୋହ ଦର୍ଶନର ରୂପ ସ୍ମୃତ ?
ସାର୍ଥକ ମୋର ଜୀବନ ବହି ସେ ସ୍ମୃତି !
ତା ପରେ ବରଷା ଅଶେଷ କଷଣ ମୋର,
ପରବତ ଦେହେ କେତେ ଲଙ୍ଗଳ ଗାର !
ବଜ୍ରର ସ୍ପର୍ଶ ଗରଜନ ତମ ଘୋର,
ପଙ୍କେ ସଲିଳେ ପୁଣି ନାଚ ମଜିବାର !

"ସକଳ କଷଣ ସଫଳ ମୋ ଅନୁଭୂତ,
ସହଜ କରିବ ଆଜିକାର ତୋର ସ୍ମୃତି ।
ବସ ପାଶେ ଆଜ ନିଷ୍ଠୁର ନୁହ ଆଉ,
ନିନ୍ଦା ଛାପର ଯେ କରିବ କରୁଥାଉ ।
ଗହନ କାନନେ ଫୁଟିଥିଲୁ ଫୁଲ ଏକା
ବିଧାତା କରୁଣା ଯୋଗେ ତୋହ ତୁଲେ ଦେଖା
ତୋଳିଛୁ ଆଦରେ ରଖିବାର ଥାନ କାହିଁ ?
ରୂପ ତେଜେ ମରେ କୁଟୀର ଲଜ୍ଜା ପାଇ
ସବୁ ସମ୍ପଦ କସ୍ତୁରୀ ମୃଗସମ,
ସମ୍ପଦ ଦୂରେ ଭରମିବା ଅଧରମ ।
ଖସିଛୁ ଅଳକ ନୟନ ସନ୍ନିଧାନେ !
କରବୀ ଫୁଲଟା ଖୋସିଦିଏଁ ରହ କାନେ ।
ମାୟା ମୃଗ ଅବା ଆସିଅଛୁ ହୋଇ ବଣା
ମର୍ତ୍ତ୍ୟ ସରଗ ପଡ଼ୁନାହିଁ ମୋତେ ଜଣା,
ଏଡ଼େ ଶୋଭା ତୋର କେଉଁ ଫୁଲ କଲୁ ଚୋର
ରହ ଆଉ ଥରେ ଦେଖି ନିଏ ଭଲ କରି ?"

ଟୁଟେ୍ଯ ତରୁଣୀ ତରୁଣ ନୟନ ହସି !
ଶତଯୁଗ ବ୍ୟଥା ଦୁଃଖ ସ୍ୱପ୍ନ
ପରାଣୁ ଯାଏ ବା ଖସି !



# ପ୍ରଣୟର ଆଦ୍ୟ ଅନୁନୟ

୧—କାହିଁ ପାଇଁ କୌତୁହଳ ? ନିରୁଦ୍‌ବେଗକର ବନ୍ଧୁ ମନ !
କି ଭାବ ହରବ ମୋର ଯୁଗବ୍ୟାପୀ ସ୍ୱଚ୍ଛ ଅବରଣ ?
ବିନମ୍ର ଶ୍ରୁତୁସ୍ପ ଭଙ୍ଗୀ ବ୍ରୀଡ଼ାନତ ମୋ ନୟନ ତଳେ,
ତୀବ୍ର ଅଭିଳାଷ ତବ ଦେଖିବାକୁ କି ଅଲେଖ ଜଳେ ?
ଗୋଲପ ମାଧୁରୀ ଅବା ପଦ୍ମ ଗନ୍ଧେ ନୁହ ବନ୍ଧୁ ତୁଷ୍ଟ ?
ଛିନ୍ନ କରେ ବୃନ୍ତ ଦଳ ଯେସନେ ବୈଜ୍ଞାନିକ ଦୂରଦୃଷ୍ଟ
ଜ୍ଞାନର ପିପାସା ଲାଗି, ତା ମାଧୂର୍ଯ୍ୟ କର ଛିନ୍ନ ଭିନ୍ନ
ସୁଖୀ ଦେଖ ରୂପ ତଳେ କି ଅଲେଖ ଜଳେ ନିଶି ଦିନ ?
ଶାନ୍ତ କୌତୁହଳ ତବ ? ନ କର ସେ ବିଫଳ ପ୍ରୟାସ !
ତୃପ୍ତି ବିନିମୟେ ବୃଥା କିଣି ନାହିଁ ଅଶେଷ ନୈରାଶ୍ୟ !
ଜୀବନର ନଗ୍ନ ରୂପେ ଏ ଧରାର ସୌନ୍ଦର୍ଯ୍ୟ ପିପାସୁ
ଅମରାବତୀରୁ ଅବା ବିଶ୍ୱ ସୃଷ୍ଟି ସୌନ୍ଦର୍ଯ୍ୟ ପ୍ରକାଶୁ,
ଶ୍ରେଷ୍ଠର ସମ୍ପଦ ଶୋଭା ନାରୀ ଅଙ୍ଗ କରଛ ଭୂଷଣ,
ଛିନ୍ନ କର ନାହିଁ ତାକୁ ! ଘେନ ମୋର ଦୀନ ନିବେଦନ !

—୧୨୦

୨—ରହୁ ନାହିଁ ଧୃତ ସଖା ? ଘନ ଘନ ହାଣୁଛୁ ଉଚ୍ଛ୍ୱାସ—
ପ୍ରଗଲ୍‌ଭ ସମୀର ଯେହ୍ନେ ଯାଏ ଦୋଲ ବାସନ୍ତୀ ବଲ୍ଲରୀ !
ନୁହଁ ତୃପ୍ତ ଦେଖି ମୋର ନିମୀଳିତ ଚକ୍ଷୁ, ମନ୍ଦ ହାସ ?
ତରୁଣୀ ଅମ୍ବର ଲେଉଡ଼ ବନ୍ଧୁ ତେଣୁ ମୋ ନଗ୍ନ ପ୍ରକାଶ ?
ଲଜ୍ଜ୍ୟାରେ ମୁ ଯାଏଁ ସଢ଼ି ! ଦେଖି ତୁମେ ହେଉଛ ବିମର୍ଷ ?
ଅପ୍ରକାଶ ମୋ ଆନନ୍ଦ ତୃପ୍ତି ଲଭି ତବ ପୁଣ୍ୟ ସ୍ପର୍ଶ !!
ବିଳମ୍ବ ନ ସହେ ଭଲେ ? ଧର ଧୈର୍ଯ୍ୟ ଶର ପ୍ରାଣଧନ,
'ବ୍ୟର୍ଥକର ନାହିଁ ଶର ନିଃସ୍ୱ ପ୍ରାଣ ପୂଜା ଅୟୋଜନ !
ଅମୂଲ୍ୟ ପବନ ସ୍ପର୍ଶ ! ଅଦୃଷ୍ଟ ମୋ ଦେବତା ସାନ୍ନିଧ
କି ଦେବ ତା ପ୍ରତିଦାନ ଭାଳି ଲଜ୍ଜେ ମରେଁ ଚିରସ୍ନିଗ୍ଧ !
ନଗଣ୍ୟ ମୋ ଦାନ ତୁଚ୍ଛ, ଅପୂର୍ଣ୍ଣ ମୋ ଏ ନୈବେଦ୍ୟ ଥାଳି,
ଅବାଧ ମନ୍ଦିର ଦ୍ୱାରେ ତେଣୁ ବେଳ ଯାଏ ମୋର ଭାଳି !
ମନ୍ଦିରେ ଦେବାକୁ ପାଦ ଥରେ ଦେହ ଶତଗୁଣ ବ୍ୟଥା,
ତୁଚ୍ଛ ରୂପ ବନ୍ଦ ବୃଥା ଲଜ୍ଜା ଦିଅ ଅବାଧ ଦେବତା !

୩—ପ୍ରଣୟ ପ୍ରଥମ ସ୍ପର୍ଶେ ମଧୁର ଏ ନିଭୃତ ମିଳନେ,
ନ ପାରେଁ ସମଜ ବନ୍ଧୁ ତନୁ ଲତା କମ୍ପେ କ୍ଷଣେ କ୍ଷଣେ !
ସହସ୍ର ପ୍ରୟାସେ ଖୋଲୁ ନୟନ ଯୁଗ ନୁହେ ଉନ୍ମୀଳିତ,
ଅଦୃଷ୍ଟ ସାଗର ପାରୁ ଯେହ୍ନେ ଧୀରେ ଅମର ସଙ୍ଗୀତ
ଭାସି ଆସେ ସମୀରଣେ ! ଚତୁର୍ଦ୍ଦିଗ କୌମୁଦୀ ପ୍ଲାବିତ !
ବୁଝିଛ ନା ତୁମେ ବନ୍ଧୁ ?—ଚିରବାଧ ପ୍ରଣୟ ବାଞ୍ଛିତ ?

ତୁମର ସନ୍ନିଧେ ଆଜ ଧନ୍ୟ କର ମୋ ହୃଦୟ ରାଜ,
ରହିବି କି ମୁଖ ଟେକି ? ତୀବ୍ର ଇଚ୍ଛା ! ମାଗେ ଲାଗେ ଲାଜ !
କାହିଁକି ଅସ୍ଥିର ତୁମେ ? ପଚାରୁଛ ଦର୍ଶନ ବାସନା ?
ନାହିଁ, ନାହିଁ ! ନୟନ ମୋ ଦେଖାଇଛି ଜୀବନେ ଛଳନା !
ଦେବତାର ସ୍ପର୍ଶ ସମ ତୁମ ଅଙ୍ଗ ଗନ୍ଧ ଯାଏ ଛୁଇଁ,
ଯେସନେ ବାସନ୍ତୀ ସନ୍ଧ୍ୟା ଅନ୍ଧକାରେ ମୁକୁଳର ଭୁଇଁ;
କୁଣ୍ଠିତ ସୁନ୍ଦର ଆଜ ! ମର ପ୍ରାଣ ପ୍ରତୀତ ଅମର !
ଏ କୌମୁଦୀ-ସ୍ୱପ୍ନ-ଲୋକେ ବନ୍ଧୁ ମୋ ଜୀବନ ଦାନର୍ଭର !

୪—ଏ ନଶ୍ୱର ଦେହ ପରେ ଗଢ଼ିଲେ ଯେ ଦେବତା ମନ୍ଦର,
କଳୁଷ କାଳିମା ପରେ ପୁଣ୍ୟ ପ୍ରଭା ଯେବା କଲେ ସ୍ଥିର,
କଲେ ଦେବ-ଯୋଗ୍ୟ,ଦୀନା ନାରୀ ଜନମେ ଭକ୍ତି ପ୍ରୀତିଭରେ !
ସାଗର ମନ୍ଥନ୍ତୁ ଅବା ଅମୃତର ସନ୍ଧାନ ଅନ୍ତରେ !
ଦେବତାର ପ୍ରିୟ ତୁମେ, ବନ୍ଧୁ ମୋର ଦେବତାର ଦାନ,
ସେ ଅନ୍ତର ଶୁଭ୍ର ପୂତ ଅମୃତର ନିତ୍ୟ ଅଧିଷ୍ଠାନ !
ଜାଗିଛି ବାସନା-ମୋହ, କାମ୍ୟ ପୁଣି କ୍ଷଣ ଚପଳତା ?
ସ୍ଥିର ହୁଅ !(ଦେବତାର ଦାନେ କର ଅବନତ ମଥା !
ଆଜର ଏ ପୁଣ୍ୟ ଲଗ୍ନ ଜୀବନରେ ହେଉ ଗୋ ଅମର,
କ୍ଷଣ ସ୍ପର୍ଶ ଅନୁଭୂତ, ନୀରବ ଏ ନିଭୃତ ବାସର,
ଏ ପ୍ରଣୟ ପବିତ୍ରତା, ଧନ୍ୟ କରୁ ବ୍ୟାକୁଳ ଜୀବନ !)
ମାନବର ଭାଗ୍ୟ ଡୋର ଧର ପଛେ ହସୁ ଗୋ ମରଣ ।
ଲଜ୍ଜା ଅବରଣ ମୋର ବନ୍ଧୁ ପୁଣ୍ୟ-ସୌନ୍ଦର୍ଯ୍ୟ-ସମ୍ବଳ,
ନିମ୍ନେ ତାର ପୁଞ୍ଜୀଭୂତ ସଂଗ୍ରାମର କଳୁଷ-ଗରଳ ।



# ବନ୍ୟା ବିପ୍ଳବ

୧—ବନ୍ୟା ବନ୍ୟା ଚତୁର୍ଦ୍ଦିଗେ ପ୍ରଳୟ ପ୍ଳାବନ !
ଲକ୍ଷ ଆର୍ତ୍ତକଣ୍ଠ ଡାକେ ରଖ ନାରାୟଣ !
ଅନାଥ ଶରଣ ପ୍ରଭୁ ଅଶ୍ରୁ ନିବେଦନ,
ବିକଳ ପ୍ରାର୍ଥନା ସତେ ହେବ ଅକାରଣ ?
ବିଫଳ କି ହେବ ଅସହାୟ ହାହାକାର,
ନ ଫିଟିବ ବୁଝି ତବ ମନ୍ଦିର ଦୁଆର ?
ମରଣ ପ୍ରଖର ସ୍ରୋତେ ଯିବେ ତେବେ ଭାସି—
ମୂକ ପଶୁ ସମ ଜନ ପ୍ରାଣୀ ରାଶି ରାଶି ?
ନୀରବେ ରହିବ ତୁହିଁ ମୂକ ଶିଳା ସମ ?
ନିଷ୍ଠୁର ଏ ନୀରବତା ତୁମର ଧରମ ?
ନ ଟଳିବ ତଳେ ତୁମ ନିଷ୍ଠୁର ବିଧାନ ?
ମଳିନ ସକଳ ଦମ୍ଭ ଜ୍ଞାନ ଅଭିମାନ ?
ସୃଜନ ପ୍ରଳୟ ତବ ନିତ୍ୟ ମହୋତ୍ସବେ
ନିର୍ବ୍ବିକାରେ ତବ ଶଙ୍ଖ ନିର୍ଘୋଷେ ନୀରବେ !

୨—ଉଚ୍ଛେ ହସେ ଜଳ ସ୍ରୋତ ! ପ୍ରବଳ ଗର୍ଜନ !
ପ୍ରାଣ ଭିକ୍ଷା ଶୁଣି ବ୍ୟଙ୍ଗ କରଇ ମରଣ !
ଉପହାସ କରେ ବାତ୍ୟା, ଭାସିଯାଏ ତଟ,
ମରଣ ଗରବେ ତରୁ ଜୀର୍ଣ୍ଣ ପତ୍ର ପରି !

ନିଷ୍ଫଳ ବେଦନା ଅଶ୍ରୁ ଆତ୍ମସମର୍ପଣ,
ଆତ୍ମ ତ୍ୟାଗ ସେବା ନିଷ୍ଠା ଜଳ ନିମଗନ
ପାପ ପୁଣ୍ୟ ଗ୍ଲାନି ଦବା ସବୁ ଏକାକାର,
ଧର୍ମାଧର୍ମ ଭେଦ ବୁଦ୍ଧି ମାନସ ବିକାର,
ଲୁପ୍ତ କରି ବହି ଯାଏ କାଳ ବନ୍ୟା ସ୍ରୋତ,
ମାନବର ପ୍ରଜ୍ଞା ଯେହ୍ନେ ଅସହାୟ ପୋତ !
ସବୁ ମିଥ୍ୟା କରି ପ୍ରଭୁ ହୁଏ ପରତୀତ
ଅଲଙ୍ଘ୍ୟ ବିଧାନ ତବ ! ମଙ୍ଗଳ ସଙ୍ଗୀତ—
ମୃତ୍ୟୁ ଗର୍ଭୁଁ ରଣି ମାଗେ ପରିହୃତ ଜନ,
ତୁମ ଦୀପାଲୋକେ କର ତମିର ହରଣ !

ଶ୍ରୀ—ମରିବୁ ସକଳ ଜନ ମୂକ ପଶୁ ସମ ?
ଏ ସକଳ ହାହାକାର ଆତ୍ମନିବେଦନ—
ନିଷ୍ଫଳ ହେବ କି ସତେ ପରାଣ ଦେବତା ?
ନ ଫିଟିବ ରୁଦ୍ଧ ଦ୍ୱାର ? ନ ବାଜିବ ବ୍ୟଥା ?
ମରିବୁଁ ନୀରବେ ନିଷ୍ଠେ ମରିବୁଁ ମାତର,
ତୁମ୍ଭ ନାମ ନିଷ୍ଠୁରତା ଗାଇବୁଁ ନିଡର,
ଉଚ୍ଚସ୍ୱରେ କମ୍ପାଇ ଏ ଅସୀମ ଗଗନ,
ତବ ନମସ୍କାର ପ୍ରଭୁ କରିବୁଁ ମରଣ !
ଯାହାର ଇଚ୍ଛାରେ କୋଟି ଗ୍ରହ ଚନ୍ଦ୍ର ତାରା,
ଚରନ୍ତି ବିହାର ଅବନତ ସୃଷ୍ଟି ସାରା,
ମୁଷ୍ଟିମେୟ ନିଃସ୍ୱଜନ କିବା ଅଟେ ଛାର ?
ନୀରବେ ବିଧାନ ତବ କରିବୁଁ ସ୍ୱୀକାର ।

ନଅ ଅଶ୍ରୁ ବୃଷ୍ଟି ସୃଷ୍ଟ ପ୍ରଳୟ ଭରତା
ଜଳସ୍ରୋତେ ଭସିଯିବ ନାହିଁ ତଳେ ବ୍ୟଥା ।

୪—ଦୁର୍ଭେଦ୍ୟ ଏ ମରଣର ଅନ୍ଧକାର ଭେଦ
କରେ ବହୁ ଅଶା ଦୀପ ଅସ କିଏ ଖେଦ ?
ନିଃସ୍ୱର ଜୀବନ ଦାତା ? ମାନବ ସେବକ ?
ଦେବତାର ଦୂତ ଅବା ? ରଖ ପ୍ରାଣୀ ରଖ !
ଲକ୍ଷ ମୂକ ଜନଙ୍କର ଉଡ଼ଇ ଜୀବନ,
ପାଞ୍ଚଦିନ ହେଲା ପିଣ୍ଡେ ପଡ଼ି ନାହିଁ ଅନ୍ନ !
ନୀରବେ ଗଲେଣି ଭସି ମୂକ ପଶୁ ଯେତେ
କରୁନ କଳନା କେହି ? ବାକି ଜଣ କେତେ—
ନୀରବେ ରହନ୍ତି ଶୁଣି କାଳର ଅହ୍ୱାନ,
ଦେବତାନ୍ତୁ ବଳ ତୁମେ, ରଖ ରଖ ପ୍ରାଣ !
ସାମାନ୍ୟ ମାନବ ତୁମେ ନୁହଁ ଦେବ ଦୂତ,
ତୁମ ରକ୍ତେ ନିର୍ଜୀବ ଏ ଧରା ନିତ୍ୟ ପୂତ !
ଅମୃତ ମଙ୍ଗଳମୟ ତୁମ ପାଦ ସ୍ପର୍ଶେ !
ମୃତ୍ୟୁ-ତଳେ ପ୍ରାଣ ପଦ୍ମ ବିକଶେ ହରଷେ ।

୫—ବନ୍ୟା ପ୍ରପୀଡ଼ିତ ପଞ୍ଚଶତ ନିଃସ୍ୱ ଦୀନ ଗ୍ରାମବାସୀ,
ସହାୟ ସମ୍ବଳ ହୀନ କ୍ଷୁଦ୍ର ପଲ୍ଲୀ ଯାଇଛି ଯେ ଭସି—
ଗତ ସ୍ରୋତେ ! ଶୂନ୍ୟ ହସ୍ତେ ଘରୁ ସବୁ ଅସିଲେ ପଳାଇ
ପଥ ପାର୍ଶ୍ୱେ ! ବୃକ୍ଷତଳ ବିନା ତାଙ୍କୁ ଅଶ୍ରା ଅନ୍ୟ ନାହିଁ !

ତା ପରେ ପ୍ରବଳ ବୃଷ୍ଟି, ଅବିରଳ ଧାରା ପଡ଼େ ଝରି,
ଶୂନ୍ୟ ପିଣ୍ଡ, ବିବସନ ଦେହ, ମଜ୍ଜା ଅସ୍ଥି ଉଠେ ଥରି ।
ଲତା ଗୁଳ୍ମ ଅନ୍ତରାଳେ ଯୁବା ନାରୀ ରଖେ ତାର ମାନ
ତା କୋଳେ ଗୁଡ଼ୁଙ୍ଗୁ ଶିଶୁ ପାଖେ ବୃଦ୍ଧା କହେ ଗଲା ପ୍ରାଣ !
ମୂକ ପଶୁ ସମ ସର୍ବେ ଶୂନ୍ୟଠାକୁ ରହିଛନ୍ତି ଚାହିଁ,
କାନ୍ଦିବେ ଅଶ୍ରୁ ଲାଗି ? ନେତ୍ରେ ତାଙ୍କ ଜଳ ବିନ୍ଦୁ ନାହିଁ !
କାହା ମୁଖେ ନାହିଁ ଦଶେ ଭୋଗୀ ଜନ କ୍ଷୀଣ ଆଶା ରେଖା,
ଗୋଷ୍ଠ ଗାଭୀ ସମ ମୂକ କରୁଛନ୍ତି ମରଣ ଅପେକ୍ଷା ।
ଗୃଧ୍ର ଦଳ ବୃକ୍ଷ ଶାଖେ କରୁଛନ୍ତି ଅବା ଉପହାସ,
ନର ଭାଗ୍ୟ ଦେଖି ଦହିଁ ! ଚତୁର୍ଦ୍ଦିଗ ମରଣର ହାସ !

୬—ସାମ୍ୟବାଦୀ ଦେଶସେବୀ ଧନୀ-ସୌଧେ ଅଙ୍ଗୁଳି ଦର୍ଶାଇ,
ତର୍ଜି କହେ ଧ୍ୱଂସ ବିନା ଦରିଦ୍ରର ଅନ୍ୟ ଗତି ନାହିଁ !
ପର ଅଙ୍ଗ ପୁଷ୍ଟ ଯେତେ ନବସନ୍ତ ବିଳାସ ବ୍ୟସନେ
ଗତ୍ୟନ୍ତର ନାହିଁ ଯେବେ ନ ମିଶିବେ ମାଟିରେ ସେ ରଣେ ।
ବନ୍ୟାକ୍ଳିଷ୍ଟ ବୃଦ୍ଧ କହେ "ଲେଡ଼ା ନାହିଁ ବାବୁ ଅଭିଶାପେ,
ସୃଷ୍ଟିର ମଙ୍ଗଳ ହେଉ ଆମେ ପଛେ ମରୁଁ ଆତ୍ମ-ପାପେ !"
ପୁରାତନ ଏ ଧରାରେ କେତେ ଧ୍ୱଂସ କେତେ ସୃଷ୍ଟି ଲୀଳା
ପ୍ରୟାସ କରଇ ବ୍ୟର୍ଥ—କହ ଏହି ବନ୍ୟା କାହିଁ ଥିଲା ?
ସକଳ ଉଦ୍ଦେଶ୍ୟ ତାର ! ନ ବୁଝେ ସେ ଯେତେ ପରକାର,
ନାଚେ ନରକୀଡ଼ନକ ପଶୁ ସମ କରେ ହାହାକାର !
ଜାଣେ ଏକା ସେହି ସିନା ପଥ ଧାରେ କ୍ଷମା କରି ଠିଆ
ଉଦ୍ଦେଶ୍ୟ ତା ହେଉ ସିଦ୍ଧ ଏ ଜୀବନ ଯାଉ ଦାଖ ନିଅ !

ଜଗନ୍ନାଥ, ଜଗନ୍ନାଥ, ସେହି ଏକା ଭରସା ଜୀବନେ !
କହୁ ନୀରବରେ ବୃଦ୍ଧ ଶାଶୁ ନେତ୍ରେ ନମେ ତଵ ଚରଣେ !



## ରୂପହୀନା

୧—ରୂପସୀ କୁଳେ ତୋତେ ନ ମିଳୁ ପଛେ ଥାନ
ଶୋଚନା ନ କରବୁ ସଜନ ମୋହ ଗୁଣ ।
ଅର୍ପିଲେ ଫୁଲ ତୋଳ ଦେବତା ଉପବନେ,
ନମେ ସେ ଦେଲେ ତୁହିଁ ନଳକୁ ଲୁଲେଁ ଷଣେ !
ଶ୍ରାବଣ ଘୋର ଘନ ନମେ ସେ ଗଲେ ତୁଟି,
କୌମୁଦୀ ମାୟା ଲୋକ ଯେସନେ ଉଠେ ଫୁଟି,
ତା ବଳ ବିମୋହନ ଗୃହାଣୀ ସହୁ ତୋର,
ଶାୟୁକ ସ୍ଥାନେ ବସି ତହିଁକେ ମନ ଗ୍ଲୋର !
ମଧୁର ଗ୍ରୀବାଭଙ୍ଗୀ ମଧୁର ମନ୍ଦହାସ,
ଅମର ଜୀବନର ଭାରତୀ ପରକାଶ;
ମଧୁର ଭ୍ରୂଯୁଗ କୁଞ୍ଚିତ ବ୍ରୀଡ଼ାନତ,
ସେ ପାଦତଳେ ଫୁଟେ କୁସୁମ କେତେ ଶତ !
ଦେଖିଲେ କୋଟିନିଧି ଲଭଇ ଅବା ପ୍ରାଣ,
ରୂପସୀ କୁଳେ ତୋତେ ନ ମିଳୁ ପଛେ ସ୍ଥାନ ।

୨—ଜୀବନ ମଧୁମାସ ଅବା ମଳୟ ବାଇ
ସେ ତନୁଲତା ତୋର ଛୁଇଁଛି ଅବା ନାହିଁ;

ହେ ଶର ଚପଳଗୋ ଅଧୀର ତୋର ଗତି,
କୁସୁମ ବନେ ଅବା ଖେଳଇ ପ୍ରଜାପତି !
କଥା କଥାକେ ତୋର ଚାତୁରୀ ପରକାଶ,
ଜୀବନ ସୁରଧୂନୀ ସମାନ କ୍ଷରେ ହାସ !
ଜାଣିଇଁ ନୋହୁ ତୁ ତ କା ହୃଦ ସୋହାଗିନୀ,
ଏ ରୂପ ବରଣୀର କାହାକୁ ନାହିଁ କଣି ।
ଚାତୁରୀ ତେବେ ତୋର ନୁହଇ ଛଳେ 'ଊଣା
ଏ ପଥେ ଅକାତରେ ହାସ ପିଯୂଷ ବୁଣା ।
ସେ ରୂପ ଚାହିଁ ଯେବା କରୁ ଗୋ ଉପହାସ
ପରାଣ-ଶତଦଳ ତୋଲାଗି ପରକାଶ
ଚାତୁରୀ ଭଙ୍ଗୀ ତୋର ଶରବେ କରେଁ ଧ୍ୟାନ,
ରୂପସୀ କୁଳେ ତୋତେ ନ'ମିଳୁ ପଛେ ଥାନ ।

୩—ଚମ୍ପକ ତୋର ତନୁ ନୁହଇ ତୋର ସହ
ତୋ ତହୁଁ ବଳ ରୂପ ଧରଇ କେତେ ମହୀ ।
କବିତା କଳପନା ସ୍ଫୁରେନା ତୋତେ ଦେଖି
ଭରମେ ରୂପକାର ନ ଯାଏ ରୂପଲେଖି ।
ନାହିଁ ତୋ ତିଳ ଫୁଲ ନାସିକା ଗଜଗତି
ତୋ ଦେହ ବାସେ ଅଳି ନ ବୁଲେ ଚଉକତି ।
ତେବେ ତ ସହ ମୋର ଉପମା ନୁହେଁ ଶେଷ
କରିବେ କେତେ ଗୁଣୀ କବିଏ ମୋତେ ଶ୍ଳେଷ ।
କହିବେ ଜଗଦ୍‌ଗବ ହେଲାଣି ମତିଭ୍ରମ
ଅପାନେ ପାନେ ତେଣୁ ଢାଳଇ ସବୁ ଶ୍ରମ ।

ମାତର ଅନୁରାଗ ବଢ଼ଇ ଦନୁ ଦନ !
ତୋ ଲୀଳା ପରକାଶେ ସକଳ ଅମଳାନ !
ଆସଇ ନଭ ଧୀରେ ଜୀବନ କ୍ଷୀଣବତ
ମରଣ ପରଜାତ ମୋର ଅମରାବତୀ ।

୪—ରୂପର ଗଉରବ ତୋର ଗୋ ଅପ୍ରକଟ
ସେ ଲଗି ସହଜେ ମୁଁ ଯୁଡ଼ି ତୋ ତନୁତଟ ।
ବୁଡ଼ଇ ମନମତେ ତୋ ପ୍ରାଣ ପାରାବାରେ
ବଫଳ ବେଳାମୋର ନୁହଇ ଭ୍ରମିଧାରେ ।
ଏ ଭବ ହାଟେ ସତ୍ୱ ଦଦନ ବ୍ୟବସାୟ
ତମିରେ ଭ୍ରମି ମିଳେଛ କାହିଁକି ଅସହାୟ !
ତୋ କ୍ଷୀଣ ହାସ ଭଙ୍ଗୀ ରଞ୍ଜୁସି ନୁହେ ହେୟ
ହୃଦୟ ପୁଟର ତୋର ଅମୂଲ୍ୟ ମୋ ପାଥେୟ ।
ନୟନ ଅନ୍ତରାଳେ ପୀରତ କମଳ ଗୋ
ନଶ୍ୱର ତଳେ ପ୍ରାଣ ପିୟୂଷ ତରଳ ଗୋ ।
ଦେଖି ସେ ପୁଣ୍ୟ ଶିଖା ପରାଣି ମନ ଲୁବ୍‌ଧ
ଗଣିତା ନୋହୁ ପଛେ ମୋ ପ୍ରୀତ ମଣି ଶୁଦ୍ଧ ।
ଲୋତକ ଆସେ ଦର କ ଦେବ ସନମାନ
ହେ ଶର ରୂପହୀନା ଦୂର ସାଗର ଗାନ ।

[ ୧୯୩୩ ]



# ଅଗସ୍ତ୍ୟ——

୧—ଅଗସ୍ତ୍ୟ ଅସିଛ ତୁମେ ? ଦେଖି ନାହିଁ ଥରେ
ମାତର ପାଉଛି ବୁଝି ଆକାଶ ସାଗରେ—
ତଟିନୀ ପୁଳିନେ ଦୂର ଶ୍ୟାମ ଶୈଳ ଦେହେ
ଲଗାଇ ଗଲଣି ପୁଣ୍ୟ ପରଶଟି ସ୍ନେହେ ।
ନୀଳଇନ୍ଦବର ବର୍ଣ୍ଣ ଚୌଦଟେ ବିକାଶ
ଅକ୍ଷୁଣ୍ଣ ଅଶାର କିବା କ୍ଷୀଣ କାଶ-ହାସ ।
ଲଭିଛି ଆକାଶେ ନବ ଜୀବନ ସ୍ପନ୍ଦନ
ଅଭିଶପ୍ତ ଏ ଧରାର ଶାପ ବିମୋଚନ ।
ସକଳ ପବନ ସ୍ୱଚ୍ଛ ବିଲୋକ ମଙ୍ଗଳ
ବନ୍ଦୀମୁହିଁ କାରାବାସୀ ଅଶ୍ରୁ ଛଳ ଛଳ ।
ଦେଖିନାହିଁ ; ମାତ୍ର ତୁମ ପ୍ରୀତି ସ୍ପର୍ଶ ଲାଗି—
ମୋ ପରାଣ ପ୍ରଣୟିନୀ ନିତ୍ୟ ଅନୁରାଗୀ ।
ଗାଉଛି ଗୋପନ ସୁରେ ନୟନ ପ୍ରତିମା
ଶୁଭ୍ରହେବ କେବେ ମୋର କର୍ଦ୍ଦମ କାଳିମା ?

୨—ନିସ୍ତରଙ୍ଗ ଜଳସ୍ରୋତ ! ପ୍ରଶାନ୍ତ ଆକାଶ !
ଚୌଦିଗେ ଖେଳଇ ଯେବେ ସ୍ନିଗ୍ଧୋଜ୍ଜ୍ୱଳହାସ !
କମନୀୟ ସ୍ଥଳପଦ୍ମ ଦୂର ଆଲୋକର
ଉନ୍ମିଳିତ ଚତୁର୍ଦ୍ଦିଗେ ପୁଲକେ ଅନ୍ତର ।

ଦୂର ଶ୍ୟାମ ଧାନ୍ୟ କ୍ଷେତେ ଲହରୀ ଦୋଳନ
ସୁଦୂର ଫୀରତ ମାଧୁ ସ୍ମୃତିର ସ୍ପନ୍ଦନ ।
ସଜଳ ପଲ୍ଲବ କଲ, ସ୍ପର୍ଶେ ତବ ଧନ୍ୟ,
ଅନ୍ଧକାର ଗୃହ କୋଣେ ମାନ ମୁଁ ନଗଣ୍ୟ—
ଏକାକୀ ରହିଲି ପଡ଼ି ଜଞ୍ଜାଳ ସେ ଇମା
ତୁମରି ପରଶ ବିନା କରିବ କେ କ୍ଷମା ?
ନିଶିଦିନ କରିଛି ମୁଁ ତୁମରି ପ୍ରତୀକ୍ଷା
ଅଶ୍ରୁନେତ୍ରେ, ନିତ ତବ ଅନୁଗ୍ରହ ଭିକ୍ଷା ।
ପରଶେ କରିବ ବୋଲି ସ୍ୱବର୍ଣ୍ଣ ମୋ ଲୁହା
ଜାଗିଛି ପ୍ରଭାତେ ପ୍ରାଣେ ଅଭିସାର-ସ୍ପୃହା !



## *ଦେବଦୂତ

୧—ପଠାଉଛ ଦେବଦୂତ ମାନବ ସ୍ୱରୂପେ
ଲଭିବୁଁ ଅଲୋକ ପ୍ରେମ ଭ୍ରାନ୍ତ ଅନ୍ଧକୂପେ ।
ନଗଣ୍ୟ ଜୀବନ ମୂକ ଦୈନ୍ୟ ନିପୀଡ଼ିତ
ଶୁଣାଉଛ ମର ମୁଖେ ଅମୃତ ସଙ୍ଗୀତ !
ଶୁଣାଉଛ ତୁମ ବାଣୀ ଅକ୍ଷର ଭରସା,
ଶୁଷ୍କ ରୁକ୍ଷ ପ୍ରାଣେ ତୁମେ ମଙ୍ଗଳ ବରଷା ।
ଜୀବନ ଭରତା ନିତ୍ୟ ଜୀବନ ଅଧାର !
ଅସୀମ ଅନନ୍ତ ତବ କୃପା ମାଗିବାର ।

---

* ୧୯୩୩ ସାଲ । ରାଜା ରାମମୋହନଙ୍କ ବ୍ୟକ୍ତିତ୍ୱ ବିଷୟରେ ଦୀନବନ୍ଧୁ ଅଣ୍ଡ୍ରୁଜଙ୍କ ବକ୍ତୃତା ଶ୍ରବଣାନ୍ତର ରଚିତ ।

ଜାଣି ଜାଣୁ ନାହୁଁ ଏ ସକଳ ମୂକ ପଶୁ
ତେଣୁ ନିତ୍ୟ କାଲ ଧରି ମାନବ ପରଶୁ—
ପଠାଉଛ, ଶର ମୌନ ! ଦୟା ନୁହେଁ ଉଣା !
କୋଟି ପଶୁ ପ୍ରାଣଲୌହ କରିବାକୁ ସୁନା ।
ଅଟଳ ନ ହେଲା ତେବେ ଅଧ୍ରୁବ ବିଶ୍ୱାସ
ଚିରଦିନ ଅନ୍ଧକୂପେ ସର୍ବନାଶ ଦାସ ।

୨—ଦେବତା ତୁମରି ଚିତ୍ର ପ୍ରଶାନ୍ତ ମୂରତି
ଉଜ୍ଜ୍ୱଳ ନୟନ ବିଭା ଯେସନେ ମୁକତି !
ଦେଖିଛୁ ମୁଁ ଅନ୍ଧକାରେ, ଲଭିଛୁ ସାନ୍ତ୍ୱନା,
ଭୁଲିଛୁ ନିରେଖି ରୂପ ସହସ୍ର ଲାଞ୍ଛନା ।
ଶତ ପ୍ରବଞ୍ଚନା ଦୈନ୍ୟ ମୋ କାଳିମା ରାଶି,
ତା ଅମୃତ ବାଣୀସ୍ପର୍ଶେ ଯାଏ କ୍ଷଣେ ଭାସି ।
ଉଜ୍ଜ୍ୱଳ ସୁନ୍ଦର ନର ହୃଦୟର ମଣି
ତା ପାଦ ପରଶ ବହି ଗର୍ବିତା ଅବନୀ ।
ଅଟଳ ବିଶ୍ୱାସ ଆଶା ଯେସନେ ବଢ଼ଶୀ
ନିମେଷକ ଲାଗି ହେଲେ ନିଏ ଆକର୍ଷି ।
ପଙ୍କିଳ ଏ ସରୋବରୁ ! ଫୁଟେ ଶତଦଳ
ବିକ୍ରତ ପରଶେ କ୍ଷଣେ ବାଷ୍ପ ଛଳ ଛଳ ।
ମାନବ ସେ ? ହେଉ ପଛେ, ମାନବ-ଦେବତା !
ତାପଦ ଧୂଳିରେ ଲୋଟି ଯାଉ ଦୀନ ମଥା ।

୩—ରାତ୍ରି ଅବସାନେ ଯେତେବେଳେ ଧୀରେ ଉଠେ ସୂର୍ଯ୍ୟ
ଅବସାଦ ପାସୋରିବାରୁ ତେସନେ ହେ ପୂଜ୍ୟ—
ଆସ ଯୁଗେ ଯୁଗେ ବୁଦ୍ଧ, ଖ୍ରୀଷ୍ଟ ଚଇତନ୍ୟ
ବଜାଇ ଗମ୍ଭୀର ସ୍ୱରେ ପ୍ରୀତି ପଞ୍ଚଜନ୍ୟ ।
ସେ କି ମିଥ୍ୟା ? ମାନବ କି ଶୁଣିନାହିଁ ବାଣୀ ?
ପ୍ରଖର ଧ୍ୱଂସର ବନ୍ୟା ଆସିନି ଉଜାଣି ?
ଆସିଛି, ଆସୁଛି ଆଜି ନାହିଁ ଅବକାଶ,
ହେବ ଏ ମାନବ ପ୍ରାଣେ ଦେବତା ପ୍ରକାଶ,
ସହଜ ସରଳ ଭାବେ ହୁଅଇ ସମ୍ଭବ,
ନୀରବେ ଲାଗିଛି ପ୍ରୀତି-ବିଶ୍ୱାସ-ଉତ୍ସବ ।
ନିଶବ୍ଦେ ପ୍ରୀତିସିନ୍ଧୁ ଉଠଇ ଉଚ୍ଛୁଳି
ମରେଁ ମୁ ବିଫଳେ ସିନା କୂଳେ ବୁଲି ବୁଲି ।
ପୁଲିନର କୋଳାହଳେ ନିତି ହେଲି ବଣା
ତୁମ ନିଶବ୍ଦ ଗତି କାହିଁ ପଡ଼େ ଜଣା ?

୪—ହେ ମାନବ ବନ୍ଧୁ ! ଆଜ ମୋ କୁଟୀର ଦ୍ୱାରେ,
ଆସିଲ କରୁଣା ବହି ଯେବେ ଦୈନ୍ୟ ବାରେ—
ଶୁଣି ନିଃସ୍ୱ ଅନ୍ତରର, କରତାକୁ ସ୍ପର୍ଶ,
ତୁମ ନିତ୍ୟ ପ୍ରେମ ପଥେ ରହୁ ତାର ଯଶ ।
ସେ ଶିଳା ପ୍ରସ୍ତର ଖଣ୍ଡ ହେଲେ ଯାଉ ଦବି
ଧନ୍ୟ ହୁଏଁ ମୂକ ପଶୁ ଅଙ୍ଗ ସଙ୍ଗ ଲଭି ।



ଅଛି ଅଶ୍ରୁ ? ଦୀର୍ଘଶ୍ୱାସ ପ୍ରଚ୍ଛନ୍ନ ଅନ୍ତରେ ?
ବରଷି ଯାଅଗୋ ଥରେ ମୋ ପରାଣ ପରେ ।
ଶୁଣାଅ ପୁଣି ସେ ବାଣୀ ଯେ ବାଣୀ ଶ୍ରବଣେ
କମଳ ସୈକତେ ଫୁଟେ ବିଶ୍ୱାସ ଜୀବନେ ।
ଜୀବନେ ଜାଣିଛ ତୁମେ ଦେବତା କରୁଣା
ଦୀନଜନେ ସେ ସମ୍ପଦୁ କରନାହିଁ ଊଣା ।
ଢାଳିଦିଅ ଅଶ୍ରୁ ବନ୍ଧୁ ! ଭୁଲି ଏ ମରଣ
ଲଭିବି ଅନ୍ତରେ ସତ୍ୟ-ଜୀବନ-ସ୍ପନ୍ଦନ ।

୫—ତୁମ ବାଣୀ ଶୁଭେ ଯଥା ଅତଳ ସାଗରୁ
ଗମ୍ଭୀର ମୃଦଙ୍ଗ ଧ୍ୱନି ! ବ୍ରହ୍ମାଙ୍କ ଅନ୍ତରୁ—
ସୃଷ୍ଟି ଆଦ୍ୟ ସ୍ତୁତି ବାଣୀ ପବିତ୍ର ମଙ୍ଗଳ,
ସୃଷ୍ଟିରେ ଅବିଶ୍ରାମ ଚିରପ୍ରେମୀ ଅବିରଳ—
ନିର୍ବିକାରେ; ପ୍ରାଣଦୀପ କ୍ଷଣେ ଉଠେ ଜଳି,
ତୁମ ପୁଣ୍ୟ ସ୍ପର୍ଶେ ଶିଳା କ୍ଷଣେ ଯାଏ ଗଳି !
ମାତ୍ର ତୁମେ ଛାୟା ସମ ଗଲେ ଅପସରି,
ସକଳ ପାଶୋରି ପୁଣି ବରଇଁ ଶର୍ବସ୍ୱ ।
ଅନ୍ଧ ବିକଳାଙ୍ଗ ମୁଁ ଯେ ! ପଙ୍କ ପଥ ପାର୍ଶ୍ୱେ—
ଦେଖିଛି ମୁକତି ପଥ ବୋଲି ମୁଁ ଆଶ୍ୱାସେ—
ଆପଣାକୁ, ଭୁଲେ ପୁଣି ଆତ୍ମ ଅଭିମାନେ—
ଲଭିଛି ମୁଁ ଦିବ୍ୟଗତି ଅମୃତ ପରଶେ !
ଅବିଦ୍ୟା ଗହ୍ୱରୁ କିଏ କରିବ ଉଦ୍ଧାର
ବତାଇ ନ ଦେଲେ ପଥ ଚିର ଆପଣାର ?

୨—ଆଲୋକ ସନ୍ଦେଶ ନେଇ ଆସ ଦେବଦୂତ,
ଅନ୍ଧକାର ଦୈନ୍ୟ ମେଲେ ନୁହେ ଅଦଭୁତ !
ମାତର ମାନବ ରକ୍ତ ମାଂସ କଳେବର
ପ୍ରସ୍ଫୁଟିତ ପଙ୍କେ ଯଥା କମଳ ସୁନ୍ଦର !
ସହଜ ସରଳ ଭାବେ ଲଭିଛ ବିକାଶ,
ତେଣୁ ଦୀନ ମାନବର ଆଲୋକ ଆଶ୍ୱାସ !
ତୁମ ନେତ୍ର ଯୁଗେ ଫୁଟେ ନୈରାଶ୍ୟର-ଆଶା,
ତୁମର ଅନ୍ତରେ ପ୍ରୀତି ଅନୁକମ୍ପା—ଭଷା,
ବଦନ ମଣ୍ଡଳେ ନିତ୍ୟ ତତଷା ସୌମ୍ୟତା,
ନିରେଖିଲେ ଥରେ ନର ଭୁଲେ ଯେତ ବ୍ୟଥା !
ଅବିଦ୍ୟା ବର୍ଦ୍ଧିତ ବୁଦ୍ଧି କରେ ପ୍ରତ୍ୟାଖ୍ୟାନ ?
କ୍ଷମ ଅପରାଧ ସେ ଯେ ଶୈଶବ ଅଜ୍ଞାନ !
ପ୍ରସାର ଦକ୍ଷିଣ ଭୁଜ ! ପରମ ସୁହୃଦ !
ପୁଣ୍ୟ ସ୍ପର୍ଶେ ହେଉ ସୁପ୍ତ ପରାଣ ଉଦ୍‌ବୁଦ୍ଧ ।



# ପ୍ରଣୟର ଆଦ୍ୟାଶଙ୍କା

—୧—

ମୋ ଯୌବନ ଉପବନେ ବିକଶିତ ଯେତେ ଜାତି ଫୁଲ,
ଶାରଦ ପ୍ରଭାତେ ବନ୍ଧୁ ସେ ସକଳ ଯତ୍ନେ କରି ଠୁଳ,
ଦେବତାର ବେଦୀ ପ୍ରାନ୍ତେ ହେଲି ଉଭା ! ଶିର ଅବନତ !
ଦେବା ହେବ ନାହିଁ ଭଲ ଶଙ୍କା ଭୀତ ପୀଡ଼ଇ ନିୟତ !

ମାତର ଦୁର୍ଭାଗ୍ୟ ମୋର ! ପୂର୍ବ ଜନ୍ମେ ନାହିଁ ତପ ପୁଣ୍ୟ,
ମନ୍ଦିରେ ନ ଦେଇଁ ପାଦ ଦେବତାର ସିଂହାସନ ଶୂନ୍ୟ !
ବ୍ୟଥିତ ଅନ୍ତରେ ତହିଁ ଅସୁଥିଲ ଅଭାଗୀ ବାହାରି
ଡାକିଲା ଯେ କ୍ଷୁବ୍ଧ-ଅମ୍ଭା ରକ୍ତ-ମାଂସ-ପ୍ରଣୟ ଭିଖାରି—
ସେ କି ତୁମେ ? ତୁମେ ? ହେଉନାହିଁ ତଳେ ପରତୀତ !
ତୁମରି ପ୍ରଣୟ ସେଦିନେ ଅଜ ଏଥୁଁ ଯୋଜନ ଅତୀତ !
ରୂପସୀ ରମଣୀ ମୁହିଁ ? ଗର୍ବିତ ଧରଣୀ ମୋତେ ଧରି ?
ରମଣୀର ଅଭିମାନ ଭୁଲି କ୍ଷଣେ ଲାଜେ ଯାଏ ମରି !
ଯେ ଧନେ ବଢ଼ଇ ଭ୍ରାନ୍ତ ଦେବତାର ନୁହିଁ ପରିଚୟ
ନାରୀ ମୁହିଁ—ନୁହେଁ ମାଂସମେଦ—ସେ ମୋ ଶିର ପରାଜୟ !

—୨—

ନାହିଁ ମୋର ତତ୍ତ୍ୱପ୍ରଜ୍ଞା, ଅତି ଦୀନା ମୁଁ ତରୁଣୀ ବଧୂ,
ଜାଣିନାହିଁ ସବାଧରେ ପ୍ରଚ୍ଛନ୍ନ ବା କେତେ ମୋର ମଧୁ,
ନ ଜାଣେ କି କଥା କହେ କାନ୍ତ ଏ ମୋ ନୟନ ଭଙ୍ଗିମା,
ଅକ୍ଷୁଣ୍ଣ ପରଶେ ମାନ ନାହିଁ ପାଏ ଅପମାନ ସୀମା ।
ଦାରୁଣ ବ୍ୟଥାରେ ଝରେ ନୀର ନେତ୍ରୁ ଭୁଲଇଁ ନାକର,
ବସ୍ତ୍ରକେ ବରନ୍ତା ହେଲେ ଗୌର ତନୁ ଲଳିତ ଅଧର ।
ଲଭନ୍ତି ସହଜେ ଅବା ଶରବିଦ୍ଧ ଦେବତା ସନ୍ଧାନ
ଯା ଲାଗି ନନ୍ଦିତ ପୁରେ ମରେ ଝୁରି ତରୁଣୀ ପରାଣ !
ସେ ରୂପ ଜାଳଇ ବହ୍ନି, ମୁକ୍ତି ପଥ କରେ କଣ୍ଟକିତ,
ଯା ମୋହେ ନିର୍ବାଣ ଲଭେ ଏ ଜୀବନ ମଙ୍ଗଳ ସଙ୍ଗୀତ,
ଶୋଷେ ଯେ ଅନନ୍ଦ ପ୍ରୀତି ପରଶିତ ଦୁର୍ବହ ଜଞ୍ଜାଳ,
ତା ଦେନ କରିବ ଗର୍ବ କେଉଁ ନାରୀ ? ବନ୍ଧୁ, ସେ ତା କାଳ !

ସେ ଦୃଷ୍ଟି ଫେରାଅ ସଖା ! ବ୍ୟର୍ଥ ନୋହୁ ପୂଜା ଅୟୋଜନ !
ଦେବତା ସାନ୍ନିଧ୍ୟେ ହେଉ ଧନ୍ୟ ପ୍ରୀତି-ପ୍ରଥମ-ମିଳନ !

—୩—

ତୁହେଁ ମୁଁ ଉର୍ବଶୀ ମେନା, କଳ୍ପଲୋକେ ତୁହେ ମୋର ବାସ,
ନାହିଁ ମୋ ଚାତୁରୀ ଭଙ୍ଗୀ କରିବାକୁ ଲୀଳା ପରକାଶ !
ହାବ ଭାବ ବ୍ରୀଡ଼ା ଛଳ ନାହିଁ ଜାଣେ ସ୍ତମ୍ଭନ କୌତୁକ,
ବାସ୍ତବ ବାଳିକା ବଧୂ ! ଅସହାୟ ଅନଭିଜ୍ଞ ମୂକ !
ତୁମରି ହୃଦୟ ବନ୍ଦୀ ଜାଲ ବାନ୍ଧି ରଖିବାକୁ ମାୟା,
ଜାଣିନି କୁହୁକ ମନ୍ତ୍ର କହ ତୁମ ଇଚ୍ଛା ଯାହା ତାହା ।
ତାହିଁ କି ହତାଶ ହେବ ଭୁଲି କଳ୍ପଲୋକ ମାୟାବିନୀ ?
ବିନମ୍ରେ କହୁଛି ମୁଁ ଗୋ ସେ ମନ୍ଦିରେ ନିତ୍ୟ ପୂଜାରିଣୀ !
ତବ ପୁଣ୍ୟ ପିଠେ ଯହିଁ ଧ୍ୟାନରତ ନିର୍ବିକାର ଶିବ
ବାଢ଼ିବି ଜୀବନ ପୂଜା ସକଳ ସାଧନା ଶ୍ରୀସଦିବ ।
କରି ତନୁ ପ୍ରାଣପାତ ଜାଣେ ନାହିଁ ହେବନା ସଫଳ,
ଶକ୍ତି ହୀନା ନାରୀ-ତପଃ ଢାଳି ଶତ ନୟନର ଜଳ ?
ହେବ କି ଗ୍ରହଣ ଯୋଗ୍ୟ ? ସୁଲଭ କି ହେବ ସାର୍ଥକତା ?
ବିମୁଗ୍ଧ ପ୍ରଣୟୀ ମୋର ! କି ବୁଝିବ ନାରୀ ହୃଦ ବ୍ୟଥା ?

—୪—

ବାସ୍ତବେ ରଚିବା ବନ୍ଧୁ ଜୀବନର ସକଳ ସ୍ୱପନ,
କାଳ ସିନ୍ଧୁ ଅନ୍ଧକାରୁ ଖୋଜି ନେବା ଅମୂଲ୍ୟ ରତନ,
ଶିର ଅଭିପ୍ରାୟ ତୁମ ଅନଭିଜ୍ଞା ବାଳିକା ବଧୂର,
ସଂଗ୍ରାମେ ଅକ୍ଷତ ସତେ ହେବ ମୋର ସୀମନ୍ତ ସିନ୍ଦୁର ?

ନାହିଁ ସେତେ ଅଣା ! ...      ...      ...

ତେଣୁ ବନ୍ଧୁ ପଦେ ଧରିବାର ଲାଗି
ପ୍ରୟାସ ନ କରୁଁ ତୁମେ ଶର ଭୋଳା ହେଉଛ ବୈରାଗୀ !
ଛୁଟ କେଉଁ ସ୍ୱପ୍ନ ପଛେ ଅବୋଧ ମୁଁ ନ ପାଏ ତା ଅନ୍ତ,
ପଞ୍ଜର ପଞ୍ଜର ଭେଦ ଖୋଜ ବୁଲ ଅକୁଳ ବସନ୍ତ !
ବନ୍ଧୁ ତେଣୁ ଥରେ କର ! ଶିଥିଳ ମୋ ମାଧୁରି ଅଛେଦ୍ୟ !
ସ୍ୱପ୍ନ ନୁହେ ବାସ୍ତବ ମୁଁ ! ସ୍ୱଳ୍ପ ପ୍ରୀତି ମୋ ଦୀନ ନୈବେଦ୍ୟ !
ନେବ ଅବା ନାହିଁ ତାକୁ, ଫେଡ କହ, ଅଛୁ ନା ସାହସ ?
ତୁମରି ପୌରୁଷେ ବନ୍ଧୁ କହ ସତେ ରଖିବ ତା ଯଶ ?
ରୂପ ଅଭିଳାଷୀ ଅବା କର ଯେବେ ଦଗ୍ଧ ଅସହାୟ—
ଅମ୍ଳ ପ୍ରବଞ୍ଚନା ପାଇଁ କ୍ଷମି ବନ୍ଧୁ ଦିଅ ଗୋ ବିଦାୟ !

[ ୧୯୩୪ ]



# ଚକ୍ଷୁ ଚକୋର

ଯେ ନୟନେ ନାହିଁ ବାସନା ତୀବ୍ର ପୀଡ଼ା,
ବିଦ୍ୟୋତସବ ଯେ ନୟନେ କରେ କ୍ରୀଡ଼ା,
ସେ ବେନି ନୟନ ଦବାଗ୍ନି ଚାହିଁ ଚାହିଁ
ବ୍ୟଥିତ ଚକୋର ଗୀତ ତାର ଯାଏ ଗାଇ । ୧ ।

ସୁପ୍ରୋତ୍‌ଥିତ ଶାରଦ ପ୍ରଭାକ କାନ୍ତ,
ଅଥବା ବ୍ୟଥିତା ସନ୍ଧ୍ୟା କରୁଣ ଶାନ୍ତ,
ମଙ୍ଗଳ ସଦା ସେ ବେନି ନୟନୁ ଝରେ;
ବ୍ୟଥିତ ଚକୋର ଚାହିଁ ଚାହିଁ ତାକୁ ମରେ । ୨ ।

ମେଘ ଅବୃତ କରୁଣ ଜୋଛନା ପରି ?
ପରଶି ପରାଣି ଦଏ ନାହିଁ ପୁଣି ଧରି,
ଶୂନ୍ୟ କାସାରେ ସଜଳ ସେ ନୀଳକଇଁ,
ଚାହିଁ ଏ ଚକୋର ତା ବେଦନା ଯାଏ କହି ।୩।

ଦେଖିଛ ପଥିକ ସାର୍ଥକ କରି ଶ୍ରମ ?
ବହଇ ସେ କେବେ ସବୁଜ କ୍ଷେତ୍ର ଭ୍ରମ !
ଶୂନ୍ୟ ଅକାଶେ ଅବା ଏକାକିନୀ ତାର,
ପ୍ରତପ ଚନ୍ଦ୍ର ତମିର ଗର୍ଭ୍ଭୁଁ ଢାଳଇ ଜ୍ୟୋତକ ଧାରି ! ।୪।

ଜନନୀର ତହିଁ ଶତ ମଙ୍ଗଳ ଗୀତ,
ଛାଉନି ମାତର ପ୍ରଣୟ ଶଙ୍କା ଭୀତ;
ସଜଳ ଯେସନେ ଶୈଶବ ସରଳତା
ଭରେ ସେ ନୟନ ନୀଳାକାଶ ଅବା
ସାଗର ଗମ୍ଭୀର ବ୍ୟଥା ! । ୫ ।

ଶାନ୍ତ ମାଧୁରୀ ହୁଏ ନାହିଁ ତଳେ ମାପି,
ପ୍ରଣୟେ କାବ୍ୟେ ପାରେ ନାହିଁ କେହି ଥାପି,
ସାଗର ସେ ପାରୁଁ ଗମ୍ଭୀର ବଂଶୀ ତାନ !
ସେ ନୟନେ ଚାହିଁ ବ୍ୟଥିତ ଚକୋର
ଢାଳେ ତାର ଅଭିମାନ । ୬ ।

'ପ୍ରଭାତ କମଳ ସମାନ ସେ ଅଶ୍ରପତା !
ମେଲିଲେ ଝରଇ ଅମୃତ ମାଦକତା,
ମୃତ୍ୟୁ ଅକୂଳ ଜୀବନ ସ୍ପର୍ଶ ପାଇ,
ବ୍ୟଥିତ ଚକୋର ଗାଏ ନିଶିଦିନ
ଯୁଗଳ ନୟନ ଗୀତ୍ହ । ୭ ।

[ ୧୯୩୪ ]



## ବାସର ଗୀତ—

—୧—

ବାସର-ମିଳନ-ରବି ! ଶେଷ ଯାମ ! ଅସ୍ତାଚଳେ ଶଶୀ ! .
ବ୍ରୀଡ଼ା, ନିମୀଳିତ ନେତ୍ରେ ପ୍ରଣୟୀରେ ମୁଗ୍‌ଧେ କହେ ହସି
ବହ୍ଲିଲତା ପ୍ରଣୟିନୀ "ମନେ ଥିବ ମନେ ଥିବ ବନ୍ଧୁ ?
କହିବଟି ସତ କହ ?······ ଅନଭିଜ୍ଞ ଏ ତରୁଣୀ ବଧୂ—
କରିଛି କି ଏଡ଼େ ଭାଗ୍ୟ ହେବ ବୋଲି ଅମର ଅଙ୍କିତ
ସେ ଚପଳ ଚିତ୍ତପଟେ ? ··· ··· କିବା କ୍ଷଣେ ? ··· ···
ଭାଲି ସଙ୍କୁଚିତ !

ମନେ କି ପଡ଼ିବ ବନ୍ଧୁ ଅଜର ଏ କ୍ଷଣିକ ମାଧୁରୀ ?
ପରାଣ ପରଶି ଜ୍ୟୋତ୍ସ୍ନା ପୁଣି ଏହି କ୍ଷୁଦ୍ର ସ୍ୱପ୍ନପୁରୀ ?
ମନେ କି ପଡ଼ିବ ନିଃସ୍ୱ—ନିବେଦନ,ବ୍ରୀଡ଼ା—ଅଭିମାନ ?
କ୍ଷୁଦ୍ରୁରୀ ସୋହାଗ ? ଯେବେ ଭ୍ରମ ସ୍ୱରେ ଜୀବନ ସଂଗ୍ରାମ—

ଡାକବ ପୌରୁଷେ ତବ ଧୂମ ହେବ ସହସ୍ର କଳ୍ପନା !
ଅଗ୍ନିଇଜ୍ଞନ ସଙ୍କେତରେ ନ ଭୁଲିବ ? ହେବନାହିଁ ବଣା ?
ଡାକବ ଅଦର-କଣ୍ଠେ ଶୁଷ୍କ ଯେବେ ପ୍ରାଣ-ଧାର ? ହାୟ !—
ବିଦାୟ ବାସର-ଗୃହ ! ବନ୍ଧୁ ମୋର, ବିଦାୟ···ବିଦାୟ !

—୨—

"ଭୁଲି ଯିବ ? ଭୁଲି ଯିବ ?" ହାଣି ଦେଇ କହିଁତ ଭଉସି—
ଭଉରେ ପ୍ରଣୟୀ ହସି—ରହ, ଦେଖିନ ଏ ଁ ଭଲ କର
ଚନ୍ଦ୍ରରୁ ଶପୁତ ସୁଧା ଝର ବେନି ଚନ୍ଦ୍ରର ନୟନ,
ବନ୍ଧୁଲି ନିନ୍ଦିତ ସେହି କମନୀୟ ଅଧର କମ୍ପନ,
ଅନାବୃତ ଶୁଭ୍ର ଗ୍ରୀବା, ତୁଷାର ଧବଳ ବାହୁ ଲତା,
ବିନୟେ କହୁଛି ଖୋଲି ଖୋଲି ଥରେ ନିମୀଳିତ ପତା !

ରୁଚିର ସର୍ବାଙ୍ଗୁ ତବ ସ୍ଫୁରଇ ଯେ ଅଜ୍ଞ ଅବାରିତ—
ପଥଶ୍ରାନ୍ତ ଏ ପଥିକ ପିଇ ନେଉ ଜୀବନ-ସଙ୍ଗୀତ !
ବାସ୍ତବ ସଂଗ୍ରାମ ଭୟ ? ଛି ! ଛି ! ସେ ଯେ ବାଞ୍ଛା ଚପଳତ ।
ଏ ଜୀବନ ଯାର ଦାନ ବୁଝିବେ ସେ ସଂଗ୍ରାମ ବାରତା !
ଶ୍ରାନ୍ତ ପାନ୍ଥ-ଜନ ପ୍ରାଣ କଲେ ଯେବା ମାଧୁର୍ଯ୍ୟ ମଣ୍ଡିତ,
ଅଜ୍ଞର ଏ ପ୍ରୀତି-ରସ କରେ ଯାର କରୁଣା ଇଙ୍ଗିତ,
ଏ ପୌରୁଷ କଲେ ଦାବ ପୂର୍ଣ୍ଣ ହେବ ପୀରତ ଅଧାର !
ଅଙ୍ଗର ମାଧୁର୍ଯ୍ୟ ଲାଗି ପ୍ରାଣ—ପ୍ରିୟା କର ନମସ୍କାର !

—୩—

ଏ ପଥିକ-ପାନ୍ଥଶାଳା ତୁମର ଏ ବାସର ଭବନ !
ଅଶେଷ ମାଧୁର୍ଯ୍ୟ ଭରା ସେହିକେ ସ୍ୱର୍ଗ-ଜୀବନ୍ତ-ସ୍ୱପନ !

ଅଥବା ସାଗର ପାରେ ମୁକ୍ତ କବି ଚିତ୍ତ—କଳ୍ପଲୋକ !
ତୁମେ ଅଧିଷ୍ଠାତ୍ରୀ ଦେବୀ ! ଭୁଲିଯାଏଁ ନିର୍ଯାତନ ଶୋକ !
ନିରେଖିଲେ ସେ ଆନନ, ସ୍ୱେଦବିନ୍ଦୁ ଯହୁଁ ପଡ଼େ ଖସି,
ମଳିନ ସୁନ୍ଦର କ୍ଷଣେ ! ତବ ସ୍ପର୍ଶେ ଚପଳ-ଉର୍ବଶୀ !
କି ବିପ୍ଳବ ଭାବନା ମୋର ? ଲକ୍ଷ ପ୍ରାଣେ ସଂଗ୍ରାମର କାଳ !
ସକଳ କଳଙ୍କ ଧୌତ କରିବ ଗୋ ସେ ଅଙ୍ଗୁଳି ସ୍ଥଳି,
ପୋଛିବ ବେଦନା ଅଶ୍ରୁ, ପ୍ରଦୀପ ଗୋ ଜାଳିବ ଅନ୍ଧାରେ,
ତୁମରି ଆଶ୍ୱାସ ଲଭି ବାହିବି ଅକୂଳ ପାରାବାରେ
କ୍ଷୁଦ୍ର ମୋ ତରଣୀ ଗୋଟି ! ପ୍ରୀତି-ହାସ୍ୟ ପଥ ଆଲୋକିତ !
ତୁମ କଣ୍ଠେ ମିଶାଇ ମୁଁ ଗାଇବି ଗୋ ବିଜୟ ସଙ୍ଗୀତ !
ଫେରିବ ସୈନିକ ଅବା କ୍ଷୁଣ୍ଣ ପରାହତ, ବ୍ୟର୍ଥ କାମ !
ବାସର ଭବନେ ନିକି ରାତି ଲାଗି ନ ଦେବ ବିଶ୍ରାମ ?"

—○—

"ଜାଣିଛୁ ପଥିକବନ୍ଧୁ ! ହେ ଅଜ୍ଞାତ ଦୂରଦେଶ ପାନ୍ଥ !
ଭୁଲିବା ଅଗମ୍ୟ ପଥ ତୁମରି ସେ ସାର ଅବିଶ୍ରାନ୍ତ ।
ନ ଜାଣେ ମାତର କିବା ଶୁଣି ତବ ଦୂର ବଂଶୀସ୍ୱନ
ତୁମରି ଆହ୍ୱାନ କିବା ଲଗାଇଲ ପ୍ରାଣେ ଉଚ୍ଚାଟନ !
ନିସ୍ତବ୍ଧ ମାଧବୀ ଜ୍ୟୋତ୍ସ୍ନା କୁଞ୍ଜ ତାନ ପରି ଏ ମଧୁର
ବନ୍ଦୀ କଲା ମନ ପ୍ରାଣ ତୁମ ମୁଗ୍ଧ ବାଳିକା ବଧୂର !
ସେଦିନୁ ଆରମ୍ଭ ହେଲା ଅନଭିଜ୍ଞା ଦୀନା ବାଳିକାର,
ଲାଜ ନିବନ୍ଧନ ଭୁଲି ନିର୍ଜନ ନିଶୀଥ ଅଭିସାର !
ସେ ଦିନୁ ବାସର-ଗୃହ ଗନ୍ଧେ ପୁଷ୍ପେ କରି ସୁସଜ୍ଜିତ,
ଚାହିଁଛି ବାସକ-ସଜ୍ଜା ତୁମ ପଥ ଉନ୍ନିଦ୍ର-ନିଶୀଥ !

ଅସିଲ ତ ଅଜ ! ଧନ୍ୟ ତୁମ ବଧୂ ! ଚପଳ ଦେବତା—
ନ ରହିବ ? ନୋହୁ ପଛେ !
ବୃଥା ପ୍ରାଣେ ଦେବ ନାହିଁ ବ୍ୟଥା !
ଜୀବନ ଅମୃତ ଲଗ୍ନ ବାନ୍ଧିବାର ବିଫଳ ପ୍ରୟାସ,
ନିରେଖି ତୁମରି ବଧୂ ଅପଣାକୁ କରେ ଉପହାସ !
ମୁକ୍ତ ଦ୍ୱାର ତୁମଲାଗି ! ଜୀବନ "ସୁଦୂର ସ୍ମୃତି"···ହାୟ !
ବିଦାୟ ବାସର-ଗୃହ ! ବନ୍ଧୁ, ପ୍ରିୟ, ବିଦାୟ ବିଦାୟ !

୫— ଅଗୁରୁ-ଚନ୍ଦନ ଗନ୍ଧେ ମନ୍ଦ ସମୀରଣେ ଯାଏ ମିଶି,
ବାସର ଉତ୍ସବ ଶେଷ ! ପାହୁ ଅଛେ ପ୍ରୀତି-ଶୁଭ-ନିଶି !
ପ୍ରଣୟୀ ପରାଣେ ବାଜେ ଦୂରପଥ କରୁଣ ଅହ୍ୱାନ,
ଧୂପଶିଖା ସମ ତା'ର ପ୍ରାଣୁ ସ୍ପନ୍ଦୁରେ ଗାନ ! ··· ··· ···

"ବାସର ଭବନ ବିଦାୟ ପ୍ରଣତି ଘେନ !
ମଳିନ ଦିଶିଲ ଉତ୍ସବ ଦୀପ ହେମ !
କଣଲାୟ ଶେଷେ ନୟନ ମୁଦନ୍ତି ବଧୂ,
ଅସ୍ତ ଚନ୍ଦ୍ର ଡାକ କହେ "ଗଲ ବଂଧୂ !"

ବକୁଳ ମଲ୍ଲୀ କେତକୀ କୁସୁମ ଦାମ,
କେତେ ଅଯତ୍ନେ ଧୂଳିରେ ଦିଶଇ ମ୍ଳାନ,
ଢର୍ମ ବିନ୍ଦୁ ଗୁଡ଼ିଜା ନୟନ ପତା,
ସୁଦୂର ଅନ୍ତରେ ବଧୂର ସ୍ମୃତିର ବ୍ୟଥା !

ଉଠ ନବ ବଧୂ ଉଷା ସମୀରଣ ଡାକେ,
ଡାକେ ଖଞ୍ଜନ ସୁଦୂର ମୁକୁଳ ଶାଖେ,

ମୁଗ୍ଧ ନୟନେ ଛୁହେଁ ରହେ ନୀରବତା
ସବୁ ଅନନ୍ଦେ ବାଜେ କବା ବ୍ୟର୍ଥତା ।
ଶୂନ୍ୟ ଜୀବନ ସ୍ଥଳକୁ ପୁଣି କେ ଡାକେ ?
ବିଧୁର ସଜନୀ ଯେସନେ ଚନ୍ଦବାକେ !
କରୁଣେ ଡାକଇ ଦୂରପଥ ଅବିରଳ
ସକଳ ତିଆଗି ଦୂର ପରବାସୀ ଚଳ ।
ଉଠ ବଧୂ ବୋଲି ଡାକିବାକୁ ଆଉ ଥରେ ?
ମଳିନ ପ୍ରଦୀପ ସମାନ ମରମେ ମରେଁ !
କହିବାର କଥା କଣ୍ଠେ ରହଇ ଲୁଚି,
ଅପଣାର ଛାଏଁ ଶୀତଳ ପୀରତି-ରୁଚି !
ନିମୀଳିତ ଆଖି, ସ୍ୱପ୍ନ କୁଶଳେ ବଧୂ,
ନ ଜାଣଇ କେବେ ଫେରିବ ଏ ତୁମ ବନ୍ଧୁ,
ଫେରିଲେ ଥିବଟି ଅଧରେ ହାସ୍ୟ ହେମ ?
"ବାସର ଭବନ ଛଦାୟୁ ପ୍ରଣତି ଘେନ !"

[୧୯୩୪]



## ପଥ ଛାୟା

ମୁଁ ଚିର ପଥିକ, ଯାତ୍ରୀ ! ···ଏ ମରତେ ଦୂର ପରବାସୀ
ଜୀବନର ଅର୍ଦ୍ଧପଥେ କେତେ କଥା ମନେ ପଡ଼େ ଆସି !
ଅତୀତ ସହସ୍ର ସ୍ମୃତି ଲୁପ୍ତ, ଅର୍ଦ୍ଧ ଲୁପ୍ତ, ଜାଗରିତ,
ରଜନୀର ଶେଷ ଯାମେ ଶାନ୍ତ ନଭେ-ତାରକା-ଇଙ୍ଗିତ !
ପଥ ପାର୍ଶ୍ୱେ ଯେତେ ତରୁ ଏ ଯାତ୍ରୀରେ କଲେ ଛାୟା ଦାନ
ଅଛି କି ସକଳ ମନେ ? ନାହିଁ, ନାହିଁ, ସର୍ବେ ମ୍ରିୟମାଣ !

ସୁବିପୁଳ କାଳଗର୍ଭେ ସ୍ମୃତି ମାତ୍ର ଏ ଯାତ୍ରୀର ସାର,
ସଜଳ ଅର୍ଘ୍ୟ ! ଘେନ ଏ ପାନ୍ଥର ଭକ୍ତି ନମସ୍କାର !
ସଙ୍କୁଳ ବିସ୍ମୃତି ମଧ୍ୟେ ଜାଗ୍ରତ ଏକଇ ବନସ୍ପତି,
କୋଟି ସ୍ପୃହଣୀୟ ମଧ୍ୟେ ଯେତେକ ସେ ମୋ ଅମୃତ ସମ୍ପଦ !
ପ୍ରୀତି ନେଇ ଛାୟା ସମ ସ୍ୱପ୍ନମାଧୁରୀରେ ସୁଶୀତଳ,
ଯା ସ୍ମୃତି ସମ୍ପାଦେ ଶୂନ୍ୟ ପଥେ ଯାତ୍ରୀ ନୟନର ଜଳ ।
ଅନନ୍ତ ମାଧୁର୍ଯ୍ୟରସେ ସତ୍ତା ଯହିଁ ହେଲା ଅନୁଭବ,
ଦିବ୍ୟ ବନସ୍ପତି ସ୍ମୃତି ! ଏ ପାନ୍ଥର ପରମ ଗୌରବ !

—

[ ୧୯୩୫ ]

## ପାନ୍ଥଶାଳା

—୧—

ଲକ୍ଷ କୋଟି ପାନ୍ଥଶାଳା !···ଅର୍ଦ୍ଧ-ରାତ୍ରି ଛାୟାପଥ ସମ
କ୍ଷୁଧା ତୃଷା ହର ଅହା ପୁଷ୍ଟ କଲେ ଏ ଜୀବନ ମମ ।
ନାହିଁ ନାହିଁ ମନେ ଆଜ କାହିଁ କେତେ ପୁହାଇଛି ରାତି,
ଲଭିଛି ଜନନୀ-ସ୍ନେହ ଦୂରପଥ-ଆତ୍ମଭୋଳା-ଯାତ୍ରୀ !
ସକଳ ସ୍ମରଣେ ଆଜ ଶୁଷ୍କ ନେତ୍ରେ ଅଶ୍ରୁ ହୁଏ ଜମା,
ଶତ-ପ୍ରୀତି-ଆଶା ମମ ! କ୍ଷିପ୍ର ଏ ପଥିକେ କର କ୍ଷମା !
ଏ ଯାତ୍ରୀର ଅନ୍ତସତ୍ତା ତବ ପ୍ରୀତି-ସ୍ମୃତି-ଇତିହାସ,
ବିସ୍ମୃତି ଯେସନେ ସତ୍ୟ ମାତ୍ର ନିତ୍ୟ ପରମ ପ୍ରକାଶ ।
ଦୀର୍ଘ ଶୂନ୍ୟ ଏହି ପଥେ ହୋଇଯାଏ ଅହା କେତେ ଭୁଲ,
କ୍ଷୁଦ୍ର ଏକ ପାନ୍ଥଶାଳା ମାତ୍ର ନିଃସ୍ୱ ସମ୍ପଦ ଅତୁଳ !

କୁରେ, କୁରେ ! ଯାର ଅଶ୍ରୁ ଲଭି ସତ୍ତ୍ୱ ହେଲା ମୋ ପାଶୋର—
ବିସ୍ମୃତ ମୋ ଯାତ୍ରାପଥ, ଚନ୍ଦ୍ରେ ଯଥା ଜାଣେ ଚକୋର !
ଅମୂଲ୍ୟ ସମ୍ପଦ ପ୍ରୀତି ନେଲା କେବା ଅପହୃତ କରି,
ଅନ୍ଧକାରେ ଖୋଜେଁ ତାକୁ ଝୁରି ହୁଏଁ ସେ ଅଶ୍ରୁ ସ୍ମରି ।

—୨—

କୁରେ ସେହି ପାନ୍ଥଶାଳା !...ସହଯାତ୍ରୀ ଅଛ ତାକୁ ଦେଖି ?
ସକଳ ମାଧୁର୍ଯ୍ୟ ଖଣି ଶୋଭା ତାର ନୁହେଁ କାହିଁ ଲେଖି ! ·
ନନ୍ଦନ ସୁରଭି ସେଠା, ଉପବନ କୌମୁଦୀ ପ୍ଲାବିତ,
ସ୍ପର୍ଶେ ପଡ଼େ ନାହିଁ ଧରା ଶତ ଖାଲି କରେ ପୁଲକିତ !
ଶ୍ରାନ୍ତ କ୍ଳାନ୍ତ ପାନ୍ଥ ଯେତେ ଭିକ୍ଷା କଲେ ରଜନୀ ଆଶ୍ରୟ,
ଧନ୍ୟ ହେଲେ, ହେଲେ ପୂତ ଲଭି ସେ ଜନନୀ ବରାଭୟ !
ଅମୃତ ଅଶ୍ରୁ ସ୍ମୃତି ! ଶୂନ୍ୟ ମମ ଜୀବନ ସମୃଦ୍ଧି !
ସ୍ମୃତିରେ ସରଳ ପଥ ବସିଲେକ ଥରେ ନେଇ ବୁଜି ।
ଏତ ନ ପାରଇ ବାନ୍ଧି ଦୂରେ ଶୂନ୍ୟ ପଥଯାତ୍ରା ନିଶା,
ସୁଦୂର ଅଦୃଷ୍ଟେ ଜାଗେ ଭଗ୍ନ ପ୍ରାଣେ ଅଦମ୍ୟ ଜିଗୀଷା,
ବାହାର ମଡ଼ିଇଁ ଘରୁ ! କ୍ଷଣେକ ନ ଗଣି ଯାତ୍ରା କ୍ଳେଶ,
କହିବ କେ ସହଯାତ୍ରୀ ଏ ଯାତ୍ରାର କାହିଁ ହେବ ଶେଷ ?
ସକଳ ତମା ଅନୁଭୂତ ବ୍ୟଥା ସିକ୍ତ ସ୍ମୃତି ଅନ୍ଧକାରେ,
ଦୂର-ପାନ୍ଥ-ଶାଳା-ସ୍ମୃତି କୌମୁଦୀ-ପ୍ଲାବନ ପାରାବାରେ !



## ଯଶୋକାଙ୍କ୍ଷୀଙ୍କ ପ୍ରତି

୧—ଅସ୍ପଷ୍ଟ ସେ ସନ୍ଧ୍ୟାଲୋକେ ପୁଚ୍ଛଇ ରହସି
ଉତ୍କଣ୍ଠା-ଆବେଗେ ପ୍ରିୟା···"ତୁଚ୍ଛାଟାରେ ବସି
ଅନ୍ଧକାର ଗୃହ କୋଣେ ରଚୁଅଛ ଛନ୍ଦ—
ମୂକବଧୂ ସମ ଅନ୍ଧ ! କି ଅବା ଆନନ୍ଦ
ଜାଣୁଥିବ ଅବା ଆପେ, ଆନ କେହ୍ନ ଜଣେ
ନ ଦେଖିଲେ ଯାହା ପ୍ରୀତ୍ୟାଦର ଅକାରଣେ ।
ନ ଦଣେ ବସିନ୍ତ ଆଜ ରାଜ ଦରବାର ?
କବି ଗୁଣୀ ଜ୍ଞାନୀ ସମୁଚିତ ପୁରସ୍କାର—
ଲଭି ଫେରୁଛନ୍ତି, ସୁଖେ ମୁଖେ ହସ ହସ,
ଅସ୍ଥିର ଜନତା ଗାଏ କୋଟିମୁଖେ ଯଶ !
ନାହିଁ କି ପୌରୁଷ ତଳେ ? ଖାଇଲଣି ପୋକ ?
ବୁଦ୍ଧି ରସାତଳଗାମୀ ପାଦେ ପାଦ ଯୋଡ଼ି !
ଯେତେ ସବୁ କଦ୍ୱାମତ ମୋହର ଉପରେ;
ପରଖି ଆସିବ ଭାଗ୍ୟ ଯାଅ ତହିଁ ଥରେ !"

୨—ଇତସ୍ତତ କରି କବି ଭାଷଇ ଉତ୍ତର—
ଅପରୂପ ବ୍ୟଙ୍ଗ ହାସେ କମ୍ପିତ ଅଧର !
"ଯିବି ଦରବାରେ ? ମିଳିବଟି ପୁରସ୍କାର ?
ମିଳିବ କୁଣ୍ଡଳ ଯୋଡ଼ା ? ଅବା ରତ୍ନହାର—
ଲମ୍ବାଇବି ଜମ୍ବୁକଣ୍ଠ ? ବଲ୍ଲୋଳ ରସନା ?
ଜାଣିଛକି ଅଛି ତହିଁ କେତେ ସମ୍ଭାବନା ?
ବଧିର ଯେବେ ଗୋ କାନ ଶ୍ରୁଷ୍କବାକ୍ୟ ପ୍ରାଣ
ରହିବଟି ତୁମର ଏ ଆଶା ଅଭିମାନ ?

ତା ତହୁଁ ଗୌରବ ମୋର ଜୀର୍ଣ୍ଣ ଏ କୁଟୀର,
ଅଳପ ଆଦର, ପ୍ରୀତି, ତୁମ ନେତ୍ର ନୀର !
ଦେଖୁନାହିଁ ଦିବାନିଶି ଶ୍ରମ-ଜୀବୀ-ଶତ—
ଅନାହାରେ ତାଡ଼ୁଛନ୍ତି ବିଶାଳ ପର୍ବତ
ରାଜସୌଧ ଲାଗି ? କିଏ ଶୁଣେ ସେ କ୍ରନ୍ଦନ ?
ବିସ୍ମୃତିରେ ଲୟ ହେଉ ମୋ ଗୀତି ତେମନ !

[ ୧୯୩୬ ]



## କବିପ୍ରିୟା ପ୍ରତି—

୧—ରଙ୍ଗିନ ସ୍ମାରକ କାହିଁ ଆନ କବିପରି ?
ପ୍ରୀତି ନିଦର୍ଶନ କାହିଁ ଦେଇନି ସୁନ୍ଦରି ?
ଚଟୁଳ ଚାଟୁବଚନେ ହରିନାହିଁ ମନ ?
ତରଳ ପ୍ରୀତିରେ ସ୍ନିଗ୍ଧ କରିନି ଜୀବନ ?
ଡିଦାନ ଦେଇନାହିଁ ଆଦର ସେବାର ?
କ୍ଷୁବ୍ଧ ରମଣୀହୃଦ ନିତ୍ୟ କରେ ହାହାକାର ?
ସନ୍ଦେହ ଉପୁଜେ ମନେ ? ପ୍ରୀତି-ଅବିଶ୍ୱାସ—
ସକଳ ମାଧୁର୍ଯ୍ୟ ତବ କରିଅଛି ଗ୍ରାସ ?
ଶିଖାଇନି ମୋତେ କେହି ପୀରତି ବେଭାର,
ତେଣୁ ମୋ ପୀରତି ଠାଣି ଚଣା ପରକାର ।
ତରଳ ଉଚ୍ଛଳ ପ୍ରୀତି ନାହିଁ ମୋତେ ଜଣା,
ହସ୍ତଧୃତ କାବ୍ୟସମ କରିବ ରଚନା ।

ରାଷ୍ଟ୍ର-ଗୀତ ? ହେବ ପ୍ରୀତ-ସନ୍ଦେହ ମୋମନେ ?
ଆନ ଗୀତ-ଆଦରଣେ ହେବ ମୋ ମରଣ ।

୨ ।—ପ୍ରଖର ଦହନେ ତୀକ୍ଷ୍ଣ ରବିକର ତାପେ,
ଅର୍ଦ୍ଧମୃତ, କ୍ଷୁଧାତୁର, କିବା ଅଭିଶାପେ—
କରନ୍ତି ନିଷ୍ଫଳାଘାତ ରୁକ୍ଷ ପରବତେ
ଦୁଃଖୀ ଶ୍ରମଜୀବୀ ଆହା ! ଦେଖ ଗୋ ନିରତେ !
ତାଙ୍କର ଶୋଣିତ ଅସ୍ଥିମେଦମାଂସପରେ
ଗଢ଼ି ଉଠେ ରାଜସୌଧ* ଶ୍ୟୋତ ଦମ୍ଭଭରେ !
ଭିତ୍ତିରେ ପ୍ରୋଥିତ ଯଥା ଜୀର୍ଣ୍ଣ ହାହାକାର !
ତେହନେ ପୀରତ ମୋର ଲୋତକ-ପ୍ରସାର !

ଅଛି ଅନବଦ୍ୟ-ଅଙ୍ଗେ ଶ୍ରମିକ ଶକତ ?
ଅଛି ସେ ନୈପୁଣ୍ୟ ଦମ୍ଭ ଅଛି ଦୃଢ଼ମତ ?
ଭାଙ୍ଗିଲେ ଅଚଳ ମେରୁ ପାରିବ ଗୋ ଦେଖି
ବ୍ୟଥାର ଶୋଣିତେ ପ୍ରୀତ ହୋଇଛି ଗୋ ଲେଖି ।
ଲକ୍ଷ କୋଟି ନିଃଶ୍ୱାସ ତହିଁ ସ୍ତୂପୀକୃତ
ସେ ତୁମର ପ୍ରୀତ ! କର ଅଶ୍ରୁ ପରିପ୍ଲୁତ !

[୧୯୩୫]



* ସେ ସମୟରେ ନିର୍ମିତ ହେଉଥିବା ଏକ ସୁବିଶାଳ ରାଜହର୍ମ୍ୟକୁ ଉପଲକ୍ଷ କରା ହୋଇଅଛି । ସେ କରୁଣ ଦୃଶ୍ୟ ଲେଖକପତ୍ନୀଙ୍କର ବ୍ୟକ୍ତିଗତ ଅନୁଭୂତିରେ ମଧ୍ୟ ଆସିଅଛି ।

# ପଙ୍ଗୁର ଆରତି

ଦିବା ଅବସାନେ ଅସ୍ତ ଅରୁଣ ରାଗେ,
ବ୍ୟଥିତ ପଙ୍ଗୁ କ ଗାଇବ ଅନୁରାଗେ ?
ଗମ୍ଭୀରେ ଗାଏ ଧନ୍ୟ କରିଛ
ଅଙ୍ଗ ପଙ୍ଗୁ କରି !
ଧନ୍ୟ ହରି ହେ ହରି !
କାରଣ ଭୂମିରେ ସହଜେ ଦେଇଛ ଧରା,
ମଧୁର ବେଣୁରେ ଡାକଛ ସୋହାଗେ ପରା,
ଜୀବନର ରାସେ ନେଇଛତ ହାତଧରି,
ଧନ୍ୟ ହରି ହେ ହରି ।

ମୂକ ଏ କଣ୍ଠ ନେଇ ବେଦନାର ଭାଷା,
ଅଶ୍ରୁ ପୂଜାରେ ଦେଲ ଉତ୍ସବ ଆଶା,
ଗିରି ଲଙ୍ଘନ ଦେଇଛ ସହଜ କରି
ଧନ୍ୟ ହରି ହେ ହରି ।
ଗଳିତ ଅଙ୍ଗ ଭଲେ ମୋ ଶୋଚନା ନାହିଁ,
ସକଳ ଯେ ପ୍ରଭୁ ତବ ଆରାଧନା ପାଇଁ !
ପଙ୍ଗୁ ଅରତ ଯେବେ ଆନ ଜନ ପରି,
ଧନ୍ୟ ହରି ହେ ହରି ।

ଶର ନିର୍ଝର ! ଅଶ୍ରୁର ବନାମୟ
ଅପାର ଶାନ୍ତ ପୁଣି ତବ ବରାଭୟ,
ଏ ଧ୍ୟାନ ପରାଣେ ଦେଇଛତ ପ୍ରିୟ ଭରି,
ଧନ୍ୟ ହରି ହେ ହରି ।
ଜୟ ଜୟ ପ୍ରିୟ ପଙ୍ଗୁର ଭଗବାନ,
ଗୌରବ ମୋର ବନ୍ଧୁ ତୁମରି ଧ୍ୟାନ,

ଗୁହାଁ ସେହି ମୁଖ ପାଉଯାଏ ବାଞ୍ଛାବସ୍ତୁ,
ଧନ୍ୟ ହରି ହେ ହରି ।

ଜୀବନ ଦୈନ୍ୟେ ତୁମେ ହେ ପରମଧନ
ଅମା ଅଜ୍ଞାନେ ସହଜ ମୋ ଦରଶନ !
ଦେଇଛତ ଧରା ଅଖିଳ ନିଧିସରି,
ଧନ୍ୟ ହରି ହେ ହରି !

ନାହିଁ ଯେ ଦୈନ୍ୟ ନାହିଁ କିଛି ଅନୁନୟ
ତୁମ ସଙ୍ଗୀତ ଶିଖାଇ ହରିଛ ଭୟ !
ତୁମରି ଇଚ୍ଛା ସହଜ ଲଭ୍ୟ କରି
ପଙ୍ଗୁରେ ଅଜ୍ଞ ଧନ୍ୟ କରିଛ ହରି !

ନିଃସ୍ବ ଜୀବନ କଲ ଗୌରବମୟ,
ଜଳୁଛି ମୋ କ୍ଷୀଣ ପ୍ରଦୀପ ଜୟ ହେ ଜୟ !
ଜୀବନର ବୀଣା ଉଠେ କଠରେ ଥରି,
ଧନ୍ୟ ହରି ହେ ହରି !

ଅସ୍ତ ସୂର୍ଯ୍ୟ ନାହିଁ ଅନ୍ତର ମ୍ଳାନ
ଅଶ୍ରୁସାଗରେ ଜାଗେ ଅନ୍ଧାରେ
କୌମୁଦୀ ସୁଧାବାଣୀ !
ଧୌତ କ୍ଷତ ପରାଣ ସେ ସ୍ନାଏ ଭରି,
ଧନ୍ୟ ହରି ହେ ହରି ।

ପଙ୍ଗୁ ସେ ଅଜ୍ଞ ନବ ଅଭିସାର ପଥେ
ବିଭୂଷିତ ତନୁ ତୁମ ଇଙ୍ଗିତ ମତେ ।
ପୀରତି ପୂଜାର ହେମ ଦୀପଗୋଟି ଧରି,
ପଙ୍ଗୁର ବୀଣା ନିର୍ଭୟେ ଗାଏ—
ଧନ୍ୟ ହରି ହେ ହରି ।

## ତ୍ରିତ୍ରିଂଶ

—୧—

ରୂପତଳେ କବି ସତ୍ୟ ରଖିଛ ଲୁଚାଇ,
ନ ସରେ ରୂପସୀ ଦେବୀ ନାଚି ଗୀତେ ତାଇ;
ପ୍ରଶାନ୍ତ ଶାରଦ ତାର ସେ ରୂପ ପ୍ରତିଭା,
ମଙ୍ଗଳର ଅଦରଣ ବନ୍ଦିଅଛେ କବି !

—୨—

ଧନ୍ୟ ଯେ ଭୁଞ୍ଜିଛି ରୂପ ପ୍ରୀତି ମାଦକତା,
ଲଭିଛି ଯେ ରୂପାଲୋକେ ଜୀବନର ସତ୍ତା !
ନୟନ ଅରୁଣା ଲୋକେ ମରିଛି ଯେ ଥରେ,
ଧନ୍ୟ ଯେ ବନ୍ଦିଛି ପ୍ରୀତି କ୍ଷତ ମରମରେ !

—୩—

ଥରେ ହେଲେ ଚିଦାକାଶେ ରୂପଛାୟାପାତ
କୌମୁଦୀ ପ୍ଳାବନ କେବେ ଅରୁଣ-ପ୍ରଭାତ !
ଶୂନ୍ୟ ପ୍ରାଣ ବିପିନରେ ମୁରଲୀ ନିନାଦ,
ସତ୍ତା ଯାଏ ହଜି କାହିଁ ଲୟ ଅବସାଦ !

—୪—

କି ମାୟା ଏ ଦୀନପ୍ରାଣେ ରଚିଲ ରୂପସି !
କି ଅମୃତ ଢାଳିଦେଲ ମୋ ବିଲ ନ କଷି,
ଭୁଲେଁ କାହୁଁ ସମ୍ପାଦିବ ପରମ ସମ୍ପଦ,
ନିତ୍ୟ ପ୍ରାଣାରାମ କାବ୍ୟ-ଅମୃତ ସୁଖଦ !

* ଇତାଲୀୟ କବି ଦାନ୍ତେଙ୍କର ପ୍ରଣୟିନୀ ।

—୫—

ରୂପର ଗୌରବ ଅବା ଗାଇଯିବ ଗୀତେ,
ଅମୃତ ଅଭାସ ଅହା ରଖିଗଲ ଚିତ୍ତେ !
ରଖିଯିବ ଶବ୍ଦ-ବର୍ଣ୍ଣେ ? ଉପହାସ କଥା ।
ଦେଇ ବୁଝାଇ କବି-ଶିଳ୍ପୀ-ଅନ୍ତର ଦୀନତା ?

—୬—

ରୂପ ଅଦ୍ୱରଣ ପାଶେ ମରେ ଲଜ୍ଜେ ବାଣୀ,
ମରଣୀକୁ ଧନ୍ୟକରେ ସ୍ନିଗ୍ଧ ସେ ଗୃହାଣୀ !
ପୀରତ-ଭାରତୀ-ପଦାଙ୍କର ମାଦକତା
ଅରଜନି ବାଞ୍ଛକଳା ତୁଳା ସାର୍ଥକତା ।

—୭—

ଖେଳ ଖେଳ ନୟନର ମାଧୁର୍ଯ୍ୟ ପ୍ରକାଶ
ସୃଷ୍ଟିର ଅନାଦି ଉତ୍ସ ଲୀଳା ପଦ୍ମହାସ;
ଅତୃପ୍ତ ପରାଣେ ବୃହିଁ ବୃହିଁ ଦବାନିଶି
ଭାଳେଁ ପ୍ରୀତି ନେହାଳେକେ ଯାଅନ୍ତି ମୁଁ ମିଶି ।

—୮—

ହେ ଅରୂପ ଲାସ୍ୟବାଳା ଯହିଁ ଯାଅ ଚଳି,
ଚରଣ କମଳ ଯେଉଁ ପଥଯାଏ ଦଳି,
ସେ ପଥେ ଫୁଟନ୍ତି ହେଲେ କ୍ଷୁଦ୍ର ଘାସଫୁଲ !
ଅମୃତ ସମ୍ପଦ ସେ ମୋ ସ୍ୱପନ ଅତୁଳ ।

—୯—

ହସିବେ ଜଗତେ କହୁ ରୂପ ହଳାହଳ,
ପ୍ରୀତି କ୍ଷୀଣଜୀବୀ ମନୁଷ୍ୟ ବଡ଼ଶୀ କବଳ !

ସାର କରି ଜୀବନରେ କଳଙ୍କ ପସରା,
ଦୂରୁଁ ଦୂରେ ଅପସରେଁ ଦିଏ ନାହିଁ ଧରା !

—୧୦—

ଦୂରେ ଦୂରେ ବହୁଦୂରେ ଥାଅ ରୂପରାଣି
ଦରିଦ୍ର ପୂଜାରୀ-ସତ୍ତା ନ ପାର ଗୋ ଜାଣି,
ଦବା ନିଶି ପୂଜା ଅର୍ଘ୍ୟ ପ୍ରୀତ ଅଶ୍ରୁଜଳ,
ଜୀବନ ନନ୍ଦନ-ହେଉ ନିତ୍ୟ ମୋ ସମ୍ବଳ !

—୧୧—

ଧନ୍ୟ ହେଉ ଏ ଜୀବନ ସେ ସ୍ମୃତି ସୌରଭେ
ଅଶ୍ରୁ ତୁମେ ଜୀବନ-କ୍ରୂର-ଉପଦ୍ରବେ,
ସେ ରୂପେ ଜୀବନ ସତ୍ୟ ସୁନ୍ଦର ସରଳ,
ସୁନା ହୁଏ ଅଲକ୍ଷିତେ ଜୀବନ ଗରଳ !

—୧୨—

ଜୀବନେ ଯା ସ୍ପୃହଣୀୟ ମରଣେ ପୂର୍ଣ୍ଣତା;
ପରାଣ ପୀଡ଼ଇ କାହିଁ ? ବ୍ୟବଧାନ ବ୍ୟଥା ?
ରୂପ କଷଟିରେ ପ୍ରାଣ ପରଖିଲେ ଥରେ
ଅମୃତର ମାଦକତା ସ୍ଫୁରେ ମରମରେ !

—୧୩—

ଅନାଲେ ସ୍ଫୁରଇ ତେଣୁ ସୁରଭି ନିଃଶ୍ୱାସ
ବସନ୍ତ ସନ୍ଧ୍ୟାରେ ନେତ୍ର-ମଦିରା-ପ୍ରକାଶ
ଶାରଦ ଶେଫାଳୀ ଛନ୍ଦେ ଚରଣ ସଙ୍ଗୀତ
ରୂପସୃଷ୍ଟି ଗାଏ ତବ ଅନାମୟ ଗୀତ ।

—୧୪—

ଏ ସୃଷ୍ଟି ପ୍ରଚ୍ଛନ୍ନ ସତ୍ୟ ଏକରୂପ ଶିଖା
ଶିଖାଇ ସରଳ କଣ୍ଠେ ଶତ ପ୍ରହେଳିକା;
ସସୀମ ସେ ରୂପ ତବ ଅଗୋ ରୂପସିଣି ?
ବନ୍ଧି ଦର୍ଶେ କି ଅଶନ୍ତ ଅସୀମର ବାଣୀ ।

—୧୫—

ରୂପ ପ୍ରୀତି ଜୀବନର ପରମ-ଗୌରବ,
ଜୀବନ ମରୁରେ ରଚେ ନିତ୍ୟ ମହୋତ୍ସବ ।
ବ୍ୟବଧାନେ ଲୁପ୍ତ ହୁଏ ଦେଶ କାଳ ସୀମା,
ଶିଖାଇ ଗୋ ଧନ୍ୟ କଲ ପୀରତି ମହିମା ।

—୧୬—

ଦୂରେ ଦୂରେ ଥାଅ ପଛେ ନବ ବଳାହକ
ସ୍ମୃତିଁ ଚିର ତୃପ୍ତ ରୂପ ପିପାସୁ ଗ୍ଭତକ ।
ରୂପ ଅଭିମାନ ପ୍ରାଣେ ତେଜିଲେ ଅବଜ୍ଞା
ନ ଭୁଲିବ ରୂପସୀ ଗୋ ଦୀନ କବି ପ୍ରଜ୍ଞା

—୧୭—

ଏ ସୃଷ୍ଟି ମଙ୍ଗଳ ଲାଗି ରୂପ ଅଭିସାର
ଅଭିମାନେ ଅଗ୍ନିଦାହ ନିତ୍ୟ ବ୍ୟଭିଗ୍ଭର ।
ସେ ସମ୍ପଦ ନ ଦହିବ ଅଜ କୀଟ ପ୍ରାୟ
ଏ ଜୀବନ ଲାଗି ପ୍ରିୟ ନେଉଛୁ ବିଦାୟ ।



# ଯାଚଣା

—୧—

ସେ ନୟନ ଚନ୍ଦ୍ରାଲୋକେ ବସିଲେ ଜୀବନ ଧନ୍ୟ ମୋର !
ଭୁଲି ଅବସାଦ ବ୍ୟାଧି ପ୍ରାଣ କ୍ଷଣେ ଅତୀତ କିଶୋର !
ବଡ଼ ସ୍ନିଗ୍ଧ ସେ କିରଣ ! ନାହିଁ ଥିଲେ ବାସନାର ଦାହ,
ମାଲତୀ-କୁସୁମ-ବାସ ଅବା ନବସ୍ନିଗ୍ଧ ବାରିବାହ !
ସୁନ୍ଦର କରିଛ ମୋର ଜୀର୍ଣ୍ଣ ସୃଷ୍ଟି ! ଦୂର ଅବସାଦ !
ଭ୍ରମର ନିଶ୍ୱାସ ପ୍ରିୟ ବକ୍ଷେ ବାଜେ ! ନୁହେଁ ସେ ପ୍ରମାଦ !
ମରଣ ଏ କାଳେ ଯେବେ ଆସିବ ଗୋ କର ତାର ଧରି—
ପରମ ସୁହୃଦ ସମ କହିବି ମୁଁ ତା କାନେ ସୁନ୍ଦର—
ସୌନ୍ଦର୍ଯ୍ୟ ପରମ ସତ୍ୟ ! ସତ୍ୟ ସ୍ୱୟ ପରମ ସୁନ୍ଦର !
ପୀରିତି ଅଦର୍ଶେ ଆହା ପାଇ ଧନ୍ୟ ମାନବ ଅମର !
ବାଣୀ ହୁଏ ପରାହତ ! ଲଭି ତବ ପୁଣ୍ୟ ଅନୁଭୂତି
ଅପସରି ଯିବ ଦୂରେ ?....ସ୍ମୃତି ହେଉ ଜୀବନ ବିଭୂତି !
ନୀରବ ଜ୍ୟୋତ୍ସ୍ନାରେ ତବ ଅଭିସାର ସ୍ମୃତିଟି ଅତୁଳ !
ରଖିବ ସମ୍ବାଦ ସଖି ଦେବ କି ସେ ଶ୍ରବଣର ଫୁଲ ?

—୨—

ସୁଦୂର ଦିଗନ୍ତେ ସ୍ୱଚ୍ଛ ନୀରବକ୍ଷେ ଜ୍ୟୋତ୍ସ୍ନା ! ଢଳ ଢଳ
ନିଃସ୍ୱ ଏ ଅନ୍ତରେ ମମ ତବ ପ୍ରୀତି ତେସନେ ଅମଳ !
ନୟନ ମାଧୁର୍ଯ୍ୟ ତବ ଅନ୍ତର ତଟିରେ ରଚେ ରାସ,
ଅଟେଣି କିବା ମାଦକତା ! ହେଉନାହିଁ ଥିଲେ କି ବିଶ୍ୱାସ ?

ସଂଜ୍ଞା ଅପହୃତ ସମ ଜ୍ଞାନର ଗରିମା ମରେ ଲାଜେ—
ପାଶେ ଉଭା ହେଲେ ଥରେ ଶାରଦ-ଅରୁଣ-ସ୍ନିଗ୍ଧ ସାଜେ !
ସେ କାଳେ ଚକୋର ଉଠେ ଡାକି ଅହା ଶୂନ୍ୟ ସେ ପୁଳିନୁ
"ସୁନ୍ଦର ସୁନ୍ଦରତର କେସନେ ସହ୍ୱରେ ଦନ୍ତୁ ଦନ୍ତୁ ?"
ଫେରାଇ ନିଅ ସେ ଦୃଷ୍ଟି ! ବାଜେ ବକ୍ଷେ ରୁଦ୍ଧ ଦୀର୍ଘଶ୍ୱାସ !
ସେ ନୁହେଁ ବେଦନା ସହି ସେ ଯେ ପ୍ରୀତି-କୁସୁମ ନିଶ୍ୱାସ !
ପିଇଛି ଗୋ ରୂପ ସୁଧା ସକଳ ମୋ ଜୀବନଟା ଧରି
କାହିଁ ତେବେ ଅବସାଦ ? କାହିଁ ତୃପ୍ତି ପରାଣେ ସୁନ୍ଦରି ?
ସ୍ୱପ୍ନ ପରତୀତ ସତ୍ୟ ! ଶତ ଦୈନ୍ୟ ଲାଗେ ଅବାସ୍ତବ !
ବିଦାୟ ଇଙ୍ଗିତ ନେନେ ତହିଁ ମୋର ଅପାର ଉତ୍ସବ !
ଏ ସୃଷ୍ଟି-ସୌନ୍ଦର୍ଯ୍ୟବୋଧ ସେ ଯୁଗଳ ନୟନର ଶିକ୍ଷା
କୁସୁମ ସମ୍ପଦ ସ୍ମୃତି ଦିଅଁ ମୋରେ ପ୍ରୀତି-ପ୍ରହେଳିକା !

—୩—

ଆସିବ ଶ୍ରାବଣ ରାତି ! କହିବ ଗୋ ନୟନର ଜଳ ?
ମଳିନ ଶ୍ରବଣ ଫୁଲ ହେବ ସହି ମୋ ଯାତ୍ରା ସମ୍ବଳ !
ଦୁଇଦିନ ଅନ୍ଧକାରେ ଅକୂଳ ପରାଣ ପଥହରା
ସଜଳ ତାରୁଣ୍ୟ ମୋହ ନିଗାଡ଼ି ପିଇବ କ୍ରୂର ଜରା,
ଶୂନ୍ୟ ସେ ନିର୍ଜନ ପଥେ ନଥିବେ ଗୋ କେହି ସାଥି ସାହା,
ଅବଶ ଏ ଦେହ ମନ ଶୁହିଁ ଥରେ କହିବାକୁ ଅହା !
ଅପୂର୍ଣ୍ଣ ଜୀବନେ ସହି ଅପୂର୍ଣ୍ଣ ଗୋ ରହେ ଶତ ଆଶା,
ବାଷ୍ପ ବିଜଡ଼ିତ କଣ୍ଠ ପାଏ ନାହିଁ ଖୋଜି ବ୍ୟଥା-ଭାଷା ।
ସକଳ ଅସାର ମେଳେ ସଜନିରେ ସାର ପ୍ରୀତି-ସ୍ମୃତି,
ସହସ୍ର ଜୀବନମେଳେ ସାର କ୍ଷଣ-ରୂପ-ଅନୁଭୂତି ।

ନିମେଷ ମିଳନେ କହେ ଉଦାସ ନୟନ ଯେତେ ବାଣୀ
ତା ଭୁଲେ ଅମୂଲ୍ୟ କିବା ଜାଣେ ନାହିଁ ଅରେ ପ୍ରୀତି ଋଣି ।
ମଉଳି ଯାଉ ସେ ଫୁଲ ମରିବାର ନୁହେ ତାର ବାସ,
ଘନ ଅନ୍ଧକାରେ ପ୍ରୀତି-ସ୍ମୃତି ସଦା ବିଜୁଳି ପ୍ରକାଶ ।



## ରୂପାଭିମାନିନୀ—

୧—ପ୍ରଖର-ଉତପ୍ତ-ଦିବା ସମ ମମ ଉଦ୍‌ଭଲ ଯୌବନ
ହେଉଥିଲା ଲୟମାନ ଆହା ବାର୍ଦ୍ଧକ୍ୟର ଅମା ଅନ୍ଧକାରେ
ସବୁ ଅସିଲିନି ପ୍ରଭୁ ଚିର-ମୁଗଧ-କୁସୁମ ଚୟନ
ଅଶ୍ରୁ ସମ୍ବଳହୀନ ଜୀର୍ଣ୍ଣ ପ୍ରାଣ ପୂର୍ଣ୍ଣ ହାହାକାରେ !
ଜୀବନ ପ୍ରଦୀପ କମେ କ୍ଷୁର୍ଣ୍ଣ ମ୍ଳାନ ! ଦିଶେ ପଥପ୍ରାନ୍ତ !
ମୁକ୍ତାର ସନ୍ଧାନ ତେବେ ନ ମିଳିଲା ଭବ ପାରାବାରେ
ନିଳିନ ଷଟ୍‌ପଦସମ ସ୍ୱପ୍ନ ଲୋକେ ଚିର ଅବଶ୍ରାନ୍ତ
ମତ୍ତ ହେଲି ନିଶି ଦିବା ସାରକର ଆତ୍ମପ୍ରଶଂସାରେ;
ସ୍ୱାଧୀନତା ମୁକ୍ତ ଭୂମି ନିଜେ ଚଳି ଦିଖାଇଲି ତୋର
ଜୀବନ ସରଳ ପଥ କରିଥିଲୁ ଜଟିଲ ଇଚ୍ଛା ମତେ,
ହସୁଥିଲ ମୌନେ-ପ୍ରଭୁ ? ଯେବେ ଶାନ୍ତ ଚମଳ କିଶୋର—
ମଙ୍ଗଳ-ବିଧାନ ତୁଚ୍ଛ ଗଣିଲଲୁ ବରଲି ନିରତେ ?
ତୁମ କରୁ ମୁକ୍ତ କର ହେଲି କ୍ଷୁବ୍‌ଧ ଅମୃତ ବଞ୍ଚିତା
ଆତ୍ମ ସମର୍ପଣ ସୁଖେ ମଗ୍ନ ବିଶ୍ୱ ! ପ୍ରାଣେ ମୋର ଚିତା ।

୨—ମନେ ପଡ଼େ ପଥ ପ୍ରାନ୍ତେ, ସେ ଦିନ ମୁଁ ନବୀନା କିଶୋରୀ,
ମୋ ଯୌବନ ଉପବନ କୌମୁଦୀ-ଐଶ୍ୱର୍ଯ୍ୟେ ଗଲା ଭରି,

ଧନ୍ୟ ଯେବେ ସମୀରଣ ମୋ ଅଙ୍ଗ ସୌରଭ କରି ଚୋରି,
ଆସିଲ ସେ କମ୍ପ୍ର ପଦେ ସଙ୍କୁଚିତ ଭିକ୍ଷା ପାତ୍ର ଧରି—
ମୋ ସ୍ୱପ୍ନର ବେଦୀ ପ୍ରାନ୍ତେ ! ସଶଙ୍କିତ କ୍ଷୀଣ କଣ୍ଠସ୍ୱନ !
ଅଙ୍କିତ ପରିଣେ ମମ ଝୁଣ୍ଟ ତାର ମଳିନ ଗ୍ଲାହାଣୀ,
ଅଜ୍ଞ ସୁଗ୍ଧା ପଢ଼େ ମନେ ଅବଜ୍ଞାରେ ପୁଚ୍ଛିଲି କାରଣ
ଫେରାଇ ଦେଲି ମୁଁ ଶେଷେ କ୍ରୂର ଉପହାସ ବାଣୀ ହାଣି !
"କୁଶଳେ ଐଶ୍ୱର୍ଯ୍ୟମୟୀ ରହ ସଦା ! ଯେନ ନମସ୍କାରେ !
ଶୂନ୍ୟ ମୋର ସିଂହାସନ ରହୁ !" ଚକ୍ଷୁ ଢେଳିଲ ମେଲଣି,
ଦଳିଲି ତା ବରମାଲ୍ୟ ଦୃପ୍ତପଦେ ! ଅଜ୍ଞ ଅନ୍ଧକାରେ—
ସୁଲଭ ହେବ କି ଅଉ ଦିବସର ସେ ଅମୂଲ୍ୟ ମଣି ?
ଆସିବ କି ତବ ଭିକ୍ଷୁ ? କାନ୍ଦେ ନିତି ମୋ ଭିକାରୀ ପ୍ରାଣ !
ଦହେ ଆତ୍ମପ୍ରବଞ୍ଚନା, ଅତୀତ ଯୌବନ ଅଭିମାନ !

୩— ଖେଳିଛୁ ଖେଳିଛୁ ମୋହେ ! ତୁମ କରେ ଦେଇ ନାହିଁ ଧରା
ତୁମରି ଅସ୍ତିତ୍ୱ ପ୍ରଭୁ ଦିନେ ହେଲେ କରିନି ସ୍ୱୀକାର,
ଚପଳତା ଲାଗି ଦଣ୍ଡ ନିଷ୍ଠୁର ଜୀବନ ସ୍ୱାମୀ ପରି;
ଏ ଶୂନ୍ୟ ମନ୍ଦିରେ ମମ ଘନଘନ କୁଳିଶ ପ୍ରହାର ?
ଆତ୍ମ ପରିତୃପ୍ତି ଲାଗି ବାସନା ବାଡ଼ବ ଦେଲି ଜାଳି,
ପତଙ୍ଗ ସମାନ ଛିଃ ମୁଁ ଆତ୍ମଦାହ ହେଲା ସିନା ସାର ?
ଆନେ ଉପହାସ କରି ନିଜ ମୁଖେ ସିନା ଦେଲି କାଳି ?
ସଂକୀର୍ଣ୍ଣ ମୋ ମାନଦଣ୍ଡେ ତୁମ ବିଧି କଲି ମୁଁ ବିଚାର,
ନିଭିନି ବାସନା-ଦାହ ଶମିନାହିଁ ପ୍ରାଣ ହାହାକାର,
ବକ୍ଷବନ୍ଧା ଜନନୀ ଶୂନ୍ୟ ଅବିଶ୍ରାନ୍ତ ସୁରେ ପ୍ରାଣପୁରେ !

ସୃଷ୍ଟିର ଭଗିନୀ ଛାୟା ଦମ୍ଭେ ମୋର କରନ୍ତି ଧିକ୍କାର;
ଝୁଣ୍ଟି ମୋ ନାରୀତ୍ୱ ସଦା ମୁକ୍ତି ଲାଗି ଝୁହଁ ଛୁଟି ସୁଦୂରେ !
ଅଉ ଶୁଣାହେବ କିବା ହଜିଗଲା ପ୍ରୀତି ବଂଶୀସ୍ୱନ ?
ମୁକୁଳିତ ହେବ ସତେ ଶୂନ୍ୟ ଏ ଜୀବନ କୁଞ୍ଜବନ ?



## ଯୁଗ୍ମରୂପ

“ଉଚ୍ଛନ୍ନ ହେଲଣି ଦେଶ ସର୍ବସ୍ୱାନ୍ତ ଏ ବନ୍ୟା ବିପ୍ଳବେ,
ଲକ୍ଷ କୋଟି ଜନପ୍ରାଣୀ ମୃତ୍ୟୁ ଗର୍ଭେ ଲୀନ ହେଲେ ଲଭିବ
ଫେରାଇ ନ ଦିଅ, ଦିଅ ଭିକ୍ଷା ଯାହା ଲକ୍ଷ୍ମୀ ସ୍ୱରୂପିଣୀ !”
ମାଗୁଛନ୍ତି ସେବା ଦଳ ଭିକ୍ଷା ଗାଇ କରୁଣ ରାଗିଣୀ ।
ସେ କରୁଣ ଗୀତ ଶୁଣି ଉଦ୍‌ଗ୍ରୀବ ଲୋଚନେ ଦ୍ୱାର ଦେଶେ,
ଉଙ୍କି ହୁଏ ନାରୀ ଏକ-ଦିନ ଛାର ଯାଏ ଅବା କ୍ଳେଶେ !
ବିଷର୍ଣ୍ଣ ବଦନ ମ୍ଳାନ-ବାସ ଅଙ୍ଗେ ଦାରିଦ୍ର୍ୟ ସୂଚନା
ଝରି ପଡ଼େ ଅଶ୍ରୁବିନ୍ଦୁ ଶୁଣି ଗୀତ-କରୁଣ-ମୂର୍ଚ୍ଛନା ।
ଦ୍ୱିତଳ ପ୍ରାସାଦ ଶୀର୍ଷେ ବିଦ୍ୟୁତ ଆଲୋକ ତୁଚ୍ଛ କରି,
ବସିଛି ବାସକସଜ୍ଜା ଅସାମାନ୍ୟା ଷୋଡ଼ଶୀ ସୁନ୍ଦରୀ;
ଅଳି ତା ଠାପରି କରେ, “ରୂପ ହାଟେ କେ ଦେବ ତୋ ମୂଲ?”
ଜବାଧରେ ଫୁଟେ ହାସ୍ୟ ବହିଯାଏ ସଙ୍ଗୀତ ବ୍ୟାକୁଳ !
ଜନନୀର ଯୁଗ୍ମରୂପ ଭାଳି କବି ସ୍ତବ୍ଧ-ମନ୍ତ୍ର-ମୁଗ୍ଧ
ବିଚନ ଅଲୋକପାତେ ଗଢ଼ିଉଠେ ନିତ୍ୟ-ସୃଷ୍ଟି ସୌଧ ।



ଅସିଥିଲା ମାଆକୁଲେ ପତର ଗୋଠାଇ,
ସରଳ ସୁନ୍ଦର ବପୁ ଅଭରଣ ନାହିଁ,
ନାହିଁ ବେଶ ପରିପାଟୀ ଅଯତ୍ନ କବରୀ,
ଦିଶୁଥିଲା ତଥାପି ସେ ପୂର୍ଣ୍ଣଶଶୀ ପରି !
ବିବିଧ ମୁଖମଣ୍ଡନ ଜାଣିବ ସେ କାହୁଁ ?
ଜୁଟେ ନାହିଁ ଅନ୍ନ ଦୁଃଖେ ଆନ କଥା ଥାଉ ।
ରୂପ ବିପଣୀରେ କେବେ ସେ କାନନ ଫୁଲ,
ଜାଣିନାହିଁ କେବେ ହେବ ଆପଣାର ମୂଲ,
ନୀରବ ଜୀବନ୍ ତାର ମନ୍ଦେ ଯାଏ ବହି,
ବରଷ ତା କେତେ ପୁଛ ନ ପାରିବ କହି ।
କି ହେବ ବରଷ ଜାଣି ? ଝଁରଇ କାନନେ—
ଯେତେ ପର୍ଣ୍ଣ ପୁଷ୍ପ ଲତା କେବା ତାହା ଗଣେ ?
ଏ ସୃଷ୍ଟି ବିଧାନେ ଥାଳ ନୀରବ ପ୍ରଣତି,
ଆରମ୍ଭ ନିଃଶେଷ ହେବ ତା ମନ୍ଥର ଗତି ।
ହସ ହସ ତା ନୟନ କରେ ଉପହାସ,
ନାଗରିକ କୋଳାହଳ ସଭ୍ୟତା ବିକାଶ ।
କାହିଁତ ସୋହାଗ ପ୍ରୀତି ହାସ୍ୟ ଅଶ୍ରୁ ଧନ
ସେତିକି କଳ୍ପନା ତାର ! ସେ ତାର ଜୀବନ !
ସେ ପୂର୍ଣ୍ଣ ନୟନେ ସଦା ଉଠଇ ଉଛୁଳି
ଲୀଳା ପ୍ରୀତି ସିନ୍ଧୁ ଦେଖି ହୁଏ ନାହିଁ ଭୁଲି ।

× × ×

ପୋଗଣ୍ଡ କୁମାରୀ ଅବା ଯୁବତୀ ତରୁଣୀ,
ନ ଥିଲା ତ ଅବସର ହେବା ମନେ ଗୁଣି ।
କହିବ ହେ କବିକୁଳ 'ଦଶୋଟି ବସନ୍ତ—
ଏକେ ଏକେ ଲାଗି ତାକୁ କଲେ ରୂପବନ୍ତ ?'
ଭାଳିବାକୁ ନ ଥିଲା ମୋ କବିତ୍ୱ କଳ୍ପନା,
ଜୀବନ ଅମୃତ ସ୍ପର୍ଶେ ପ୍ରାଣ ମୋର ବଣା,
ବର୍ଣ୍ଣିବାକୁ ତା ଅମୃତ ମାଧୁରୀ ଗରିମା,
ଦୁର୍ବଳ ଲେଖନୀ ଅଜା ପାଏନାହିଁ ସୀମା !
ଖୋଜିବ ତୁଳନା ତୁମେ ପ୍ରୀତ ରୂପ ଗୁଣ,
କହିବ ପଦ୍ମ ପଲାଶ ସମ ତାର ଅଙ୍ଗ,
କାହିଁ ମାନୁନାହିଁ ଉପମା ଅଲଣା,
ତା ରୂପ ବିଚାର ହେବ ସେ ଏକା ତୁଳନା !
ଦେଖିଛୁ ତ ନାଗରିକ ରୂପସୀ ନାଗରୀ,
ମନେ ପଡ଼ୁ ନାହିଁ କେହି ତୁଲ ହେଲାପରି ।
ଆଦ୍ୟ ସୃଷ୍ଟି ଅରବିନ୍ଦ ସମ ସେ ଉଜ୍ଜ୍ୱଳ !
ପ୍ରାଣ ପାରିବାର ଲକ୍ଷ୍ମୀ ସର୍ବ ଲୀଳାସ୍ଥଳ !

× × ×

ମନେ ପଡ଼େ କବି ଗୁରୁ* ଦେଖି ତୁମେ ଥରେ,
ବିଷାଦ ସଙ୍ଗୀତ ଶୁଣି ପର୍ବତ କନ୍ଦରେ,
ହୋଇଥିଲ ସ୍ତମ୍ଭୀଭୂତ ! ନ ଚଳିଲା ପାଦ !
ଏସନେ ଅମୃତ ପ୍ରୀତ-ରୂପ-ପରମାଦ !
ମରୁ ପ୍ରସ୍ରବଣ ପରି ସେ ତବ ଜୀବନେ,
ଅନଶନ କାରୁଣ୍ୟ ପ୍ରୀତ ସଞ୍ଚିତ ସ୍ମରଣେ,

*୧୮-୧୯ଶ ଶତାବ୍ଦୀର ବ୍ରିଟିଶ କବି Wordsworth.

ଗାଇଲି ତା ଗୁଣି କେତେ ମାଧୁରୀ ତା ଝୁରି;
ମାନ ଏ ଆନନ୍ଦରସେ ପ୍ରାଣ ଉଠେ ପୂରି !
ଅନନ୍ତ ସୃଷ୍ଟିର ଲୀଳା ବନ୍ଦେ ଏ ନୟନ,
ଅମର ସଙ୍ଗୀତ ଉଚ୍ଛ୍ୱସ୍ତ ଅଧର ଚୁମ୍ବନ,
ନିଷ୍କପଟ ଅନବଦ୍ୟ ସରଳତା ମୂର୍ତ୍ତି
ଦେଖିନାହିଁ ଗୁରୁଅଙ୍ଗ ସୌଷ୍ଠବ ଅକ୍ଷତ !
ଏ ରୂପ କୁସୁମ ଭୃଙ୍ଗ କ୍ଷତ କଳୁଷିତ—
କରିନାହିଁ ବୋଲି ଦର୍ଶେ ଉଜ୍ଜ୍ୱଳ ପବିତ୍ର !
ଶୁଣିଥିଲି କବି ରୂପ ବିଷାଦ କ୍ରନ୍ଦନ,
ଦେଖିଥାନ୍ତି ଆଜି-ଶୁଭ୍ର-ବସନ-ନନ୍ଦନ ।
ଆନନ୍ଦମୟୀର ନିତ୍ୟ ପବିତ୍ର କଲ୍ୟାଣ,
ବନ୍ଦେ ସେ ନୟନ ଥରେ କରିଥାନ୍ତି ପାନ !

× × ×

ତୁଚ୍ଛ କରି ଜୀବନର ସକଳ କାରୁଣ୍ୟ
ଗମ୍ଭୀର ଆନନ୍ଦ ଗୀତେ ହେ ଶିଳ୍ପୀ* ନିପୁଣ—
ଗାଇଥାନ୍ତି ଏ ଜୀବନ ଆନନ୍ଦ ଅମୃତ !
ସକଳ ତୁଚ୍ଛତା ରୂପ ସ୍ପର୍ଶେ କ୍ଷଣେ ପୂତ !

× × ×

ଅସୀମ ସାଗରେ ସେବା କୌମୁଦୀ ପ୍ଲାବନ !
ସନ୍ତୁରିଉ ବୃନ୍ଦାବନେ ଅବା ବଂଶୀସ୍ୱନ !
ସୁଦୂର ଦିଗନ୍ତ ବାର୍ତ୍ତା ସଞ୍ଚିତ ନୟନେ,
ମର୍ତ୍ତ୍ୟର ଗରିମା ସବୁ ତୁଚ୍ଛ କରି କ୍ଷଣେ,
ଅତନ୍ଦ୍ରିତ ପ୍ରାଣ ରସେ ଚିର ହୁଏ ବନ୍ଧ
କ୍ଷୁଦ୍ର ବାଳିକାକୁ ଏତେ ଭେଦ ଅଭିସନ୍ଧି—

* ଉକ୍ତ କବି Wordsworth.

ଦେଲ୍ କିଏ ? ଏ ମାଧୁରୀ ଯତନେ ଶିଖାଇ
ମର୍ତ୍ତ୍ୟ ଆଲୋକିବା ବୋଲି ଦେଇଛ ପଠାଇ ?
ଦୈନ୍ୟ ଅମା ଅନ୍ଧକାରୁ ମାଧୁରୀ ବିମଳ,
ପଦ୍ମପତ୍ରେ ଆହା ଯେହ୍ନେ ନୀର ଟଳ ଟଳ,
ଲଭନ୍ତୁ ସକଳ ଲୀଳା ଏଥି ସାର୍ଥକତା,
ସେ ଭଙ୍ଗୀରେ ଚିରବଦ୍ଧ ଅବାଧ ଦେବତା,
ଧନ୍ୟ ମୁହୂର୍ତ୍ତ ! ଧନ୍ୟ ହେଲା ସାର୍ଥକ ଜୀବନ !
ସଂଶୟ ଶୃଙ୍ଖଳବଦ୍ଧ ଶାପ ବିମୋଚନ !
ସକଳ ଜଟିଳ ସୃଷ୍ଟି ନିମେଷେ ସରଳ,
ପ୍ରଫୁଲ୍ଲ ଏ ଦୃଷ୍ଟି ତଳେ ମିଳିତ ମଙ୍ଗଳ,
ସୌନ୍ଦର୍ଯ୍ୟ, ଅମୃତ-ପ୍ରୀତି, ଜୀବନ, ସଂସାର,
ଅପାର ଆନନ୍ଦେ ଘଟଣି ସବୁ ଏକାକାର !
କିଏ ତୁହି ପୁଚ୍ଛିବ କି ? କ୍ଷୁଦ୍ର ବନଫୁଲ—
ପଥହୁଡ଼ା ପାନ୍ଥଲଗି ତୁ ନିତ୍ୟ ଆକୁଳ ?
ତୁହେଁ ନାହିଁ କେଉଁ ତୋଟେ ? ଦେଇନି କେ ମୂଲ ?
ମାତ୍ର ତୁହି ଚିର ସତ୍ୟ ! ସଙ୍ଗୀତ ଅତୁଳ !
ସହସା "ଏ ସବୁ..." ବୋଲି ଜନନୀ ସୋହାଗୀ
ଡାକିଲା ଆଦର କଣ୍ଠେ ! ସ୍ୱପ୍ନଗଲା ଭାଗି !
ଦେଖିଲି ବାଳିକା କ୍ଷୁଦ୍ର ହୋଇ ଥରଥର,
ଜନନୀ ବସୁଧା ବକ୍ଷୁ ଗୋଟାଏ ପତର ।
ସକଳ କରମେ ତାର ଟଳ ଟଳ ମୁଖ,
ଅଲକ୍ଷରେ ଲଘୁକରେ ମୋ ଅନ୍ତର ଦୁଃଖ ।
ରହନ୍ତି ସ୍ମୃତିରେ ଲଖି ରୂପ-ପବିତ୍ରତା,
ତଳେ କି ବାଧିବ ଆଉ ମରଣ ତୁଚ୍ଛତା ?



# ମହାନିର୍ବାଣ*

"ସ୍ନିଗ୍ଧ ସ୍ବଚ୍ଛ ଶାଳ ତରୁ ଛାୟା ମୁଁ ଶୀତଳ,
ବହଇ ଅନିଳ ସ୍ନିଗ୍ଧ ମନ୍ଦ ଅବିରଳ,
ଶ୍ୟାମ ଦୂର୍ବାଦଳ ନବ ନୟନ ନନ୍ଦନ,
ବିରଚ ଆନନ୍ଦ ମୋର ଅନ୍ତିମ ଶୟନ
ଅଦୂରେ ନିଶୀଥସମ କ୍ଳାନ୍ତ ଅବସାଦ
ଜରା ବ୍ୟାଧି ଏ ନଶ୍ବର ଜୀବନ ପ୍ରମାଦ
ଘୋଟି ଆସେ ମୁହୁଁ ଧୀରେ ଚିତ୍ତ ଅବସନ୍ନ
ବିଫଳେ ଭିକ୍ଷୁଛ କିବା ରଚ ମୋ ଶୟନ
ଶିଥିଳ ଶକଟ ଚକ୍ର ଜୀର୍ଣ୍ଣ ବକ୍ର ଦଣ୍ଡ,
ଦୁର୍ଗମ ବନ୍ଧୁର ପଥେ ସଂକୀର୍ଣ୍ଣ ଶକଟ,
ଚଳନ୍ତୁ ଅଶୀତି ବର୍ଷ ବେଶୀ ନୁହେଁ ଆଉ
ମରଣର ପ୍ରାପ୍ୟ ତାକୁ ଦଅ ଦେଇଥାଉ,
ଉଡ଼ିଯାଉ ପ୍ରାଣବାୟୁ ସହ ଯେ ବହନ,
କାହିଁକ ଶୋଚନା ଅଶ୍ରୁ ବିରଚ ଶୟନ ।
ନିର୍ବାଣ ଉନ୍ମୁଖ ଶିଖା ଦଣେ ସୁମଧୁର
ନିଃଶେଷ ଗରଭୁଁ ତୈଳ ଯେହ୍ନେ ସେ ଆତୁର,
ମିଶିବାକୁ ମହାକାଳ ପ୍ରଶାନ୍ତ ଅନ୍ଧାରେ,
ଧ୍ୱନି ଯଥା ମହାଶୂନ୍ୟ ଶାନ୍ତ ନୀଳମାରେ,

* ବୁଦ୍ଧଙ୍କର ଅନ୍ତରଙ୍ଗ ଶିଷ୍ୟ, ସୁହୃଦ ଆତ୍ମୀୟ ଓ ଅନୁଚର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ କାୟା ପଛେ ଛାୟାପରି ତାଙ୍କର ଅନୁଗମନ କରିଥିଲେ ।

ଝରିବା ପାଦପ ଅଙ୍ଗୁ ପଳାତ ପତର
ନାହିଁ ତ ବୈଚିତ୍ର୍ୟ, ନୁହେଁ ପ୍ରକୃତ ଅନ୍ତର,
ଜନମିଲେ ମୃତ୍ୟୁ ଧ୍ରୁବ ଫେରିବ ତରଙ୍ଗ
ସାଗର ବେଳାରେ ଥରେ ହେଲେ ଗଡ଼ଭଙ୍ଗ;
ଜୀବନେ ମାତର ସାର ଶତ ସମ୍ପ୍ରୟୋଗ,
ସ୍ଥିର ଲକ୍ଷ ଯୋଗୀ ନିଷ୍ଠା ନ ଜାଣେ ବିୟୋଗ ।
ଅଟଳ ସାଧନା ବଳେ ସହଜ ନିର୍ବାଣ
ମରଣ ତା ବନ୍ଦୀସମ କରେ ଜୟଗାନ ।
ଅଗ୍ରସର ସେହି ପଥେ ! ବିଦାୟ ଏଥର !
ଶାନ୍ତ, ଶାନ୍ତ ! ପଡ଼ି ରହୁ ମର କଳେବର !

## ବୁଦ୍ଧ ଓ ରାହୁଲ

ଧନ୍ୟ ଅଜ ଜନ୍ମଭୂମି ! ଶାକ୍ୟ ମୁନି ଆଗତ ନଗରେ,
ପୁରପଲ୍ଲୀ ଦୂର ଗ୍ରାମ ନରନାରୀ ଅନନ୍ଦ କେ ଧରେ;
ନିବସନ୍ତି ଶିଷ୍ୟ ମେଳେ ନଗର ଉପାନ୍ତ ବଂଶବନେ,
ଉପେକ୍ଷିତା ଯଶୋଧାରା କି ଅବା କଳ୍ପନା ରଖି ମନେ —
ପୁଚ୍ଛନ୍ତି ରାହୁଲେ "ବତ୍ସ ଶୁଣିଛୁନା ଆଗତ ତୋ ପିତା ?"
ଅନ୍ଧକର ଜନନୀଙ୍କ ପ୍ରାଣେ ତାର ଜାଳିଲେ ଯେ ଚିତା
ଆସିଛନ୍ତି ସେ ନିଷ୍ଠୁର ! ଦୁଏଁ ପଛେ ମୁହିଁ ନାରଖାର,
ଯାଅ ବତ୍ସ ! ମାଗ ଯାଇ ସନ୍ତାନର ଚିର ଅଧିକାର !
ଗଲେ ଯେଉଁ ବଂଶବନେ ସବଳେ ପ୍ରାସାଦେ ହେଲେ ଧନ୍ୟ
ମହା କାରୁଣିକ ବୁଦ୍ଧ ସର୍ବଜୀବ ଅଶ୍ରୟ ପରମ ।

ରହୁଲ ଯାଚନ୍ତି ଶେଷେ,···"ଦିଅ ମୋର ନାଯ୍ୟ ଅଧିକାର !"
"ଚିର ଭିକ୍ଷୁ ତବ ପିତା ! ଭିକ୍ଷା ବସ୍ତୁ ତା ଜୀବନ ସାର !"
କହିଲେ ତଥାଗତ ମନ୍ଦେ ହସି···
"ଦ୍ୱାରେ ବୁଲି କରିବ କି ଭିକ୍ଷା ?
ବହ ଏ ଗୈରିକ ବାସ ଲଭ ଶ୍ରେଷ୍ଠ ନିର୍ବାଣର ଦୀକ୍ଷା !"

## *ପ୍ରକୃତ ପ୍ରଣୟ

ଅମାବାସ୍ୟା ( ଅନ୍ଧକାର )

୧— ଚାଣନା ଉଲ୍ଲସି ତୁ, ତୁ ବନ୍ଧୁ ମୋହ ଗଣି,
ଲଜ୍ଜା ସରମରେ ମୋର ପୋଡ଼ିଯାଏ ପ୍ରାଣ ।
ରୂପହୀନା କୁତ୍ସିତା ମୁ ଅମାବାସ୍ୟା ରହି,
ଦିବ୍ୟ ବପୁସନ୍ତ ତୁମେ ଅଲୋକର ଯାମୀ ।
ସପ୍ତସିନ୍ଧୁ ମନ୍ଥି ତୁମେ ଅମୃତ ପରମ,
ଦେବତାବାଞ୍ଛିତ ଦିବ୍ୟ ଜ୍ୟୋତି ନିରୁପମ ।
ତୁମ ରୂପ ବିଭା ଗ୍ରହେଁ ଏ ସୃଷ୍ଟି ଅକୂଳ,
ସ୍ୱର୍ଗ ମର୍ତ୍ତ୍ୟ ଛଣା ସୁଧା ସେ ବଦନେ ଢଳ ।
କାହିଁ ତୁମେ ନିରୁପମ ! ମୁହିଁ ରୂପହୀନା !
ଲାଜେ ମରିଯାଏ ବନ୍ଧୁ ଦେବାକୁ ମୁଁ ଚାହାଁ ।

* ବୈଜ୍ଞାନିକ ଓ ଅଲଙ୍କାରିକମାନେ ଏବଂବିଧ ପ୍ରଣୟକୁ ସନ୍ଦେହ ଚକ୍ଷୁରେ ଦେଖି ପାରନ୍ତି । ମାତ୍ର କଳ୍ପନାଲୋକରେ ଏହାର ସମ୍ଭାବନା ବଚିତ୍ର ନୁହେ । ପୂର୍ଣ୍ଣିମା "ଅଲୋକ ଦୀପ୍ତ ତରୁଣ—ଅମାବାସ୍ୟା ସର୍ବାବୟବ ଅବଗୁଣ୍ଠିତା ରୂପହୀନା ନାରୀ । ଶୂନ୍ୟଲୋକରେ ଉଭୟଙ୍କର ଅପୂର୍ବ ମିଳନ । ଚନ୍ଦ୍ରଗ୍ରହଣ ରାତିରେ ଏପରି କଳ୍ପନା ସମ୍ଭବପର । [ରଚୟିତା]

୨୧୨—

କି ଦେଖିବ ? ଅନ୍ଧକାର କୁଣ୍ଠିତ ଭଙ୍ଗିମା ?
କି ଅବା ଜୀବନେ ତାର ଗରବ ଗରିମା ?
ସେ ଲାଗି ପ୍ରତୀଚୀ ଦ୍ୱାର ଅନ୍ତରାଳେ ରହୁ
ପିଇ ବନ୍ଧୁ ରୂପସୁଧା ମରମେ ମରଇଁ !
ସେ ମୋର ପରମ ଭାଗ୍ୟ ! ନ କର ବଞ୍ଚିତା !
ଧନ୍ୟ କର କୁଣ୍ଠିତାରେ ଢାଳି ପ୍ରୀତି-ଶତା ।

## ପୂର୍ଣ୍ଣିମା (ଆଲୋକ)

୨— ରହୁ ଆଜ କ୍ଷଣେ ସ୍ତବ୍ଧ ହୃଦୟର ମୋ ଧୃତି,
ଲୁଣ୍ଠିଛୁ ଆଲୋକ ସୁଧା ପାଇନାହିଁ ତୃପ୍ତି !
ତେଣୁ ରେ ସଜନି ଏତେ ବ୍ୟାକୁଳ ବାସନା,
ସେ ଅଞ୍ଜନ କାନ୍ତି ଲାଗି ନୟନ ମୋ ବଣା ।
ନାଅ ଆଜି ଆଲୋକର ସକଳ ଗୌରବ,
ସାର ହେଉ ବିଶ୍ୱ-ସୃଷ୍ଟି-ପୀରତି-ଉତ୍ସବ,
ଆବରି ଦିଅ ଏ ବପୁ ସ୍ନିଗ୍ଧ ବସ୍ତ୍ରାଞ୍ଚଳେ,
ପରଶି ଶୀତଳ କର ପ୍ରୀତିପୁଣ୍ୟ ଜଳେ !
ଆଲୋକେ ଅନଳ ତାପ ପୀଡ଼ଇ ସଜନି,
ଲୋଡ଼େ ପ୍ରାଣ ତେଣୁ ଶାନ୍ତ ଶୀତଳ ରଜନୀ,
ନିଭଯାଉ ମୋର ସତ୍ତ୍ୱ ସ୍ନିଗ୍ଧ କାନ୍ତି ତଳେ,
ଗଳୁ ଏ ଅନ୍ତର ଯଥା ପାଷାଣ ତରଳେ ।
ଅଧର ଚୁମ୍ବନ ଶ୍ରବୁ କ୍ଲାନ୍ତ ଏ ନୟନେ,
ଶୈଶବ ସମାନ ଆଜି ଭାଗ୍ୟବାନ ମଣେଁ ।
। ଅମାବାସ୍ୟା ? ଅନ୍ଧକାର ? ଅପୂର୍ବ ସୁନ୍ଦର
ପୀରତି କମଳ ସେ ଯେ ଅକ୍ଷୁଣ୍ଣ ଅମର ।

[ ୧୯୩୪ ]



## * ସ୍ମୃତିତର୍ପଣ

୧—ଖସୁଁ ଖସୁଁ ଜୀବନର ଯବନିକା ପାତ !
ପୁଣି ଦିବସର ଜନ୍ମ ! ମଙ୍ଗଳ ପ୍ରଭାତ—
ନବଜାତ ଶିଶୁ ସମ ଆନନ୍ଦବିହ୍ୱଳ !
ସର୍ବାଙ୍ଗ ବିକାଶ ପ୍ରାଣ-ବିକଚ କମଳ !
ଜଳ ସ୍ଥଳ ଶ୍ୟାମ ଶୈଳ ଦୂର ଗିରିମାଳ,
ଜନପଦ ପୁର ପଲ୍ଲୀ ଶାନ୍ତ ଚକ୍ରବାଳ,
ଜାଗ୍ରତ ସକଳେ ଶୁଭ୍ର ଆଲୋକ ଆହ୍ୱାନେ !
ଜାଗିଛୁ ମୁଁ ସୁଗଭୀର ବ୍ୟଥା ବହି ପ୍ରାଣେ !
ଭ୍ରମଇ ନିଭୃତ ଶାନ୍ତ ତଟିନୀ ପୁଳିନେ
ନିଃସଙ୍ଗ ଏକାକୀ ! ବନ୍ଧୁ, ମନେ ପଡ଼େ ଦିନେ ?
ଭ୍ରମୁଥିଲୁଁ ବେନି ଜନ ଏଥି ଲଘୁ ମନେ,
ବାର୍ଦ୍ଧକ୍ୟ ତରୁଣି ଅନ୍ତରର ପ୍ରୀତି ଧନେ !
ଆଜି ତୁମେ ନାହିଁ ! ତଳେ ନୁହଇ ବିଶ୍ୱାସ
ଅଜାଣତେ ଝରଇ ଅଶ୍ରୁ ଦୀର୍ଘ ଭଗ୍ନ ଶ୍ୱାସ !

୨—ଏହୁ ସେ ଏକାକୀ ହଂସ !—ଦୂର ମାନସର ?
ଅତିକ୍ରମି ନଦୀ ଶୈଳ ଚଳେ ଖରତର !
ବହି ମୃତ୍ୟୁ ସ୍ମୃତି ବ୍ୟଥା ଚଳଇ ନୀରବେ.
ଅଲକ୍ଷେ ଅନ୍ଧାରେ ଅଶ୍ରୁ-ଆନନ୍ଦ ଉତ୍ସବେ ।

* ସ୍ୱର୍ଗତ ପୂଜନୀୟ ବିଶ୍ୱନାଥ କର ମହାଶୟଙ୍କ ଉଦ୍ଦେଶ୍ୟରେ ।

—ରଚୟିତା—

ନୀରବେ ଚଳିବା ପଥ କରିଛି ସେ ସାର,
ତୁଚ୍ଛ କରି ଆତ୍ମଦୈନ୍ୟ ଅଶ୍ରୁ ହାହାକାର !
ତା ଗତିରେ ପଥ ମୋର ଦିଶଇ ସରଳ
ପ୍ରତୀତ ଅମୃତ ପ୍ରାୟେ ଜୀବନ-ଗରଳ !
ମାନ ତୁମେ ନାହିଁ ? ବହିଯାଏ ଶାନ୍ତ ନଦୀ—
ଅସ୍ପଷ୍ଟ ପଶ୍ଚିମେ ନୌକା ଚଳେ ନିରବଧି,
ଜଙ୍ଗାଣି ତଟିନୀ-ସ୍ରୋତେ ପ୍ରଶାନ୍ତ ଗୌରବେ !
ତୁମେ ନାହିଁ ? ପ୍ରତୀତ ତ ହେଉ ନାହିଁ ଲବେ ?
ଅମର ତାରୁଣ୍ୟ ଲଭ୍ୟ ଛିନ୍ନ କରି ଗ୍ରନ୍ଥି !
ଶିର ଅବନତ ମୋର ହସଇ ନିୟୁତ !

୩—ଜ୍ୱଳନ୍ତ ଚିତାରେ ଦେହ ଅସିଅଛି ଲଦି,
ଅନ ଥର ପର କେତେ ସହିଅଛି ବଧି !
ବହୁବାର ଅକାତରେ ଦେଇ ମୃତ୍ୟୁ ଦେୟ,
ଆତ୍ମୀୟ ସ୍ୱଜନ ବନ୍ଧୁ ପ୍ରୀତ ସୌଖ୍ୟ-ଶ୍ରେୟ
ଅନ୍ତର ଅଚଳ ଶିଳା ଶୂନ୍ୟ ! ବଡ଼ ଶୂନ୍ୟ !
ମରଣ ରହସ୍ୟ ତେବେ ଭେଦିବା ନୈପୁଣ୍ୟ—
ନ ଲଭିଲି ତିଳେ ! ତେଣୁ ତବ ଅଦର୍ଶନେ—
ଶିଶୁ ସମ ଆପଣାକୁ ଅସହାୟ ମଣେ !
ଶିଶୁ, ମୁଁ ମାନବ ଶିଶୁ ! ନିତ୍ୟ ପ୍ରୟୋଜନ—
ଏ ଦୁର୍ବଳ ପ୍ରାଣେ ତବ ବିଶ୍ୱାସ ଦର୍ଶନ !
ଶୀତରସାଣିତ ଜ୍ଞାନ ସୂକ୍ଷ୍ମ-ଅନୁଭୂତ,
ଭାସ୍ୱର ଅବିନଶ୍ୱର ସ୍ଥବିର ବିଭୂତ,
ଥିଲା ମୋର ପ୍ରୟୋଜନ !—ଶୂନ୍ୟ ପଥ ତୃପ୍ତି !
ଶୂନ୍ୟ ସେ ସମ୍ବଳ, ସ୍ୱପ୍ନ—ଅଜା ସ୍ମୃତି ! ସ୍ମୃତି !

୪—ଏକାକୀ ମରାଳ କେଉଁ ଶୂନ୍ୟେ ଗଲୁ ଉଡ଼ି !
ରହିଗଲା ପଛେ କିସ ? ଆସିଥିଲୁ ହୁଡ଼ି ?
କି ଭୁଲ ଆସିଲୁ ଏଥି ? ପୁଚ୍ଛେଁ ମୁହିଁ କ୍ଷୁବ୍ଧ !
ଅଂବରେ ନିଯୁତ ହସି ! ଶୂନ୍ୟ ! ମହାଶୂନ୍ୟ !
ମହାଶୂନ୍ୟେ ତୁହିଁ ତୋର ବିଳାପ ନିଷ୍ଫଳ ।
ଭ୍ରାନ୍ତ ନର ! ପୋଛୁ ବିରହର ଅଶ୍ରୁଜଳ !
ମରଣେ ସ୍ୱୀକାର କର ! ପ୍ରଣମ ବିଧାନେ !
ତୁହିଁ ଦେଖ ଶିଖାନଳ ଜଳେ ତୋର ପ୍ରାଣେ !
ମହାଶୂନ୍ୟେ ପ୍ରାଣବାୟୁ ହସିଯାଏ ଲେଉଟି,
ଭ୍ରମେ ମୁକ୍ତ ହଂସ ନ ଝାଡ଼ଇ ପର ଗୋଟି !
ସାର ଅବିରାମ ଯାତ୍ରା ମହାଶୂନ୍ୟେ ତୁହିଁ,
ପାଥେୟ ସେ ଦୁଃଖ ଅଶ୍ରୁ ସଙ୍ଗୀତଟି ଟାଇ,
ଉଡ଼ିଯିବା ଦେଶାନ୍ତର କରନ୍ତୁ ସେ ସାର,
ତା ମୁକତ ମନ୍ତ୍ର ଏକା ତୋର ଆପଣାର ।

୫—ନିସ୍ତରଙ୍ଗ ନୀଳାକାଶ ଶୂନ୍ୟ ! ମହାଶୂନ୍ୟ !
କେ କହିବ କାହିଁ ଗଲା ବିମୁକ୍ତ ଶକୁନ ?
ନ ଦିଶଇ ପଥଚିହ୍ନ, ତୁହିଁଛୁ ନିରାଶ !
ରହିଗଲା ଶୂନ୍ୟମାର୍ଗେ ମୁକତ ଆଭାସ !
ସେ ଆଭାସ ଅମୃତର ଅପୂର୍ବ ଇଙ୍ଗିତ !
ଘୋଷେ ମହାଶୂନ୍ୟେ !......ଯଥା ମୃଦଙ୍ଗ ସଙ୍ଗୀତ !
ସପ୍ତ ପାରାବାର ତଳେ ଆହା କି ମଧୁର !
ଗଲା ଉଡ଼ି ଯାଉ ପଛେ, ନୁହେ ମୁଁ ବଧିର !

ସେ ମୁକ୍ତ ଅଭ୍ରାସ ମନ୍ତ୍ର ପରମ ସମ୍ବଳ,
ଦୀନ ଏହି ଜୀବନର ! ପ୍ରୀତି-ଅଶ୍ରୁଜଳ—
ଗହନ ଅନ୍ଧାରେ କରେ ପ୍ରାଣ ପରିପ୍ଲୁତ,
ଜାଗ୍ରତ ମୋ ବକ୍ଷେ ଆଶା ଆଶ୍ୱାସ-ଅମୃତ ।
ତେସନେ ତୁମର ଗତ ! ସେ ଅସ୍ପଷ୍ଟ ସ୍ମୃତି !
ବହିଆଣେ ମୁକ୍ତିମନ୍ତ୍ର, ମଙ୍ଗଳ ବିଭୂତି ।

୬—ବିସ୍ତୀର୍ଣ୍ଣ ପ୍ରକୃତି । ଧାନ୍ୟକ୍ଷେତ୍ର ସୁପ୍ରସାର !
ଶ୍ୟାମଳ ଐଶ୍ୱର୍ଯ୍ୟେ କିବା ରୁଚିର ଉଦାର ।
ସୃଷ୍ଟିର ମଙ୍ଗଳ ତହିଁ ସମ୍ପୂର୍ଣ୍ଣ ପ୍ରକାଶ,
ବିଚିତ୍ର ଆଲୋକ ଦିବା ଶୈଶବ ଆଭାସ ।
ଏସନେ ସ୍ୱରୂପ ତବ ସମ୍ପୂର୍ଣ୍ଣ ସୁନ୍ଦର,—
ପ୍ରଶାନ୍ତ ଗମ୍ଭୀର ସ୍ୱଚ୍ଛ ମଧୁର ଅନ୍ତର,
ସୁଖି ପ୍ରାଣ ଗୁପ୍ତଧନ ଭୁଲିଛି ମୁଁ ପ୍ରାସ,
ତୁଚ୍ଛ କରିଅଛି କାଳ କ୍ରୂର ଉପହାସ ।
ବାର୍ଦ୍ଧକ୍ୟ ତାରୁଣ୍ୟ ପୁଣି ତରୁଣ ସ୍ଥବିର,
ଅଦ୍ଭୁତ ଏସନେ ମର୍ତ୍ତ୍ୟେ ବେଭାର ପ୍ରୀତିର ।
ତାଙ୍କ ଅଛି ବନ୍ଧୁ ବୋଲି·····ସହାସ୍ୟ ନୟନେ—
ଚାହିଁ ମୁଖେ ମୋର ମୌନ । ···ନୀରବ !···ମୁଁ କ୍ଷଣେ—
ପୁଚ୍ଛଇ ବାର୍ଦ୍ଧକ୍ୟ ପ୍ରୀତି ଲଗେ ଅସମ୍ଭବ ?
ସକଳ ସମ୍ଭବ କରେ ମୃତ୍ୟୁ ଅନୁଭବ ।

୭—ରହିଛି ତାରୁଣ୍ୟ ଠେକ ମୃତ୍ୟୁଲୋକ ଭେଦ,
ମାତର ବାର୍ଦ୍ଧକ୍ୟ ଭାର ନ ପାରେ ମୁଁ ଛେଦ ।

ବାଧେ କାଳ ଉପହାସ ! ମୁଢ ପଶୁସମ—
ଢାଳଦଏଁ ଅଶ୍ରୁବିନ୍ଦୁ ! ନିଷ୍ଠୁର ନିର୍ମମ—
ନୟନ ସମ୍ମୁଖେ ମୋର ଦ୍ୱିଗୁଣ କଠୋର
କା ଲାଗି କରବ ଗର୍ବ ତରୁଣ କିଶୋର ?
କି ବା ତାର ଶୂନ୍ୟପଥେ ସହାୟ ସମ୍ବଳ !
ଆତ୍ମତୃପ୍ତି, ଅଭିମାନ, ଦମ୍ଭ ଅଶ୍ରୁଜଳ ?
ତୁଚ୍ଛ କରେ ସବୁ କାଳ !......

ଅମୃତ ତାରୁଣ୍ୟ

ସମ୍ଭବ ବିଶ୍ୱାସେ କାନେ । ତେଣୁ ତବ ପୁଣ୍ୟ,
ସ୍ଥବିରର ଦିବ୍ୟଶାନ୍ତି, ପରମ ଗୌରବ—
ମୋ ଚପଳ ଜୀବନର !! ଶାନ୍ତ ପ୍ରଭା ତବ
ଲୋଡ଼ଇ ଅକୁଳପ୍ରାଣେ ! ଶୁଣଇ ଅନ୍ତରେ
ଅସ୍ପଷ୍ଟ ଆଶ୍ୱାସବାଣୀ ! ମାନ ବୁଝେ···ବୁଝେ !

୮—ବିସ୍ତୀର୍ଣ୍ଣ ସାଗର ! ପ୍ରଭଞ୍ଜନ ଭୟଙ୍କର !
ଉତ୍ତାଳ ତରଙ୍ଗମାଳ ପର୍ବତ ଆକାର ।
ବିକଟ ଗର୍ଜନ-ହାସ୍ୟେ ଜପୁଛେ ଆତଙ୍କ !
ଦୁର୍ଜୟ ସୈନିକ ସମ, ନିର୍ଭୀକ ନିଃଶଙ୍କ—
କାଟି ଗ୍ଲେ ଲକ୍ଷ ଢେଉ ଆପଣା ସରଣୀ
ସାଗରେ ଅମିତ ବପୁ—ବାଷ୍ପୀୟ ତରଣୀ !
ସ୍ଥିର ଲକ୍ଷ୍ୟ ସେ ବନ୍ଦରେ ଢେଉ ରହେ ହଟି,
ବିଜୟ ଗରବେ ପୋତ ଯାଏ ସେ ଚହଟି !
କ୍ରମେ ଯାତ୍ରା ଶେଷେ ସ୍ଥିର ହୋଇ ଅସେ ଗତ,
ଦୂରେ ଦଶେ ପୋତାଶ୍ରୟ ! ଆଶ୍ରୟ ମୁକତ !

ସ୍ୱପ୍ନ ସେହି ବଂଶୀସ୍ୱନ ! ତେସନେ ଏ ଭବୁ—
ମେଲୁଣି ନେବାର ବେଳେ, ନିର୍ବାଣ ପୁରବୁ—
ସେ କ୍ଷୀଣ ଜୀବନଦୀପ ଗତ କ୍ରମେ ସ୍ଥିର !
ଗଣୁଥିଲ ଶେଷ ଶ୍ୱାସ ପାର୍ଶ୍ୱେ ଥାଇ ମୀର !

୯—ଅନନ୍ତ ଅଶ୍ରାନ୍ତ ମୃତ୍ୟୁ ପରମ ଅଶ୍ରମ !
ଏ ଜୀବନପୋତ ତହିଁ ଲଭିବା ବିଶ୍ରାମ—
ନୁହେ ଅଦଭୁତ କିଛି !···ମାତ୍ର ତା ଗୌରବ—.
ନ ଲଭି ସାଗରବକ୍ଷେ ଲକ୍ଷ୍ୟ, ପରାଭବ,
ନ ଟଳି ସଂକଳ୍ପ, ନୋହି ଭଗ୍ନମନୋରଥ,
ତରଙ୍ଗେ ନ ହୋଇ ଗ୍ରାସ ଭୁଲିବାର ପଥ,
ଅର୍ଜିଛି ସେ ଗୌରବ ଅକ୍ଲାନ୍ତ ସୈନିକ !
ମରିବାର ଶୁଣା ନାହିଁ ଦୁର୍ଜୟ ନିର୍ଭୀକ ।
ମୁଦିଛି ନୟନ ହସି ଶାନ୍ତପ୍ରାଣାରାମେ
ଲଭିଛି ପରମ ଗତି ଦେବ ଦିବ୍ୟ ଧାମେ ।
ଲାଗି ନାହିଁ ଏ ମର୍ତ୍ତ୍ୟର କାଳିମା କର୍ଦ୍ଦମ,
ଭେଦିଛି ଦୁର୍ଗମ ବ୍ୟୂହ; ସାଧିଛି ଧରମ ।
ସତ୍ୟର ପୂଜାରୀ ! ଦିନେ ଦେଖି ନାହିଁ ଭୀତି,
ନିର୍ଜୀବ ଜାତିକି ଦୀକ୍ଷା ଦେଲ ଜୀବ ନୀତି ।

୧୦—ମହାଶୂନ୍ୟେ ବଂଶୀଧ୍ୱନି ! ପ୍ରଣବ ସଙ୍ଗୀତ ।
କିଏ କାହିଁ ପାଇଁ କଲା ଧ୍ୱନି ବିଚଳିତ ?
କିଏ ବା ଉତ୍ତର ଦେବ ?·····ଟାଣି କ୍ଷୀଣଧୃତି—
ମିଶିଲା ସେ ଅବା ନାହିଁ ?······ରହିଗଲା ସ୍ମୃତି !

କାହିଁକି ଡାକ ତୁ ଅଶ୍ରୁ ? ରହୁଁ ବା ଅନ୍ତରେ ?
ଅବିରାମ ସ୍ଫୁରେ ଧ୍ୱନି ! ମିଶେ ଶୂନ୍ୟ ପୁରେ !
ଶୂନ୍ୟ, ମହାଶୂନ୍ୟ ! କିଛି ମିଳେ ନାହିଁ ସଙ୍ଗ !
ଅଦ୍‌ଭୁତ ଉଦ୍ଭବ ତାର । ରଙ୍ଗ ସ୍ମୃତି ବ୍ୟଥା-
ଦୁର୍ନିବାର ତୃଷା ଜାଳ ନିର୍ବାପିତ ଅହା,
ଆନନ୍ଦ ଅମୃତ ଗଢି, ପ୍ରାଣ ପୁରେ ରହିଁ !......
କି ଶୁଭେ ନିଗମ ପୁରେ ? ଅନ୍ତରେ, ବାହାରେ,-
ଶୂନ୍ୟେ, ନୀଳାକାଶେ, କ୍ଷୀଣ ସେ ତଟିନୀ ଧାରେ ?
ସର୍ବଦା ସ୍ଫୁରଣ ତାର ! ନାହିଁ ଅନ୍ତ ଆଦି !
ନିର୍ଦ୍ୱନ୍ଦ୍ୱେ ବାତୁଳ ମନ ରଖ ତା ସମ୍ବାଦ !

୧୧—ପୋଛୁ ବନ୍ଧୁ ସ୍ୱାର୍ଥ ଅଶ୍ରୁ ମୁଦିଲେ ନୟନ,
ନିଭୁଢେ ମୋ ଶୂନ୍ୟପୁରେ ସେ ଧ୍ୱନି ସ୍ଫୁରଣ ।
ଅପୂର୍ବ ସେ ଧ୍ୱନି ତୁଳେ ବିଶେଷ ବାରତା ।
ଜାଗଇ ଅନ୍ତରେ ଲକ୍ଷ ସ୍ମୃତିର ମମତା ।
ବିଶେଷ ଅମୃତ ସୃଷ୍ଟି ଦୀପ୍ତ ପୁଣ୍ୟଲୋକ,
ରହେ କି ନଶ୍ୱର ମୋର ଗ୍ଲାନି ବ୍ୟଥା ଶୋକ ?
ମରଇ ବିରହ ବହ୍ନି, ମୃତ୍ୟୁ ଲଜେ ଲୁଚେ,
ଲୁପ୍ତକର ସତ୍ତ୍ୱ ଯେବେ ସେ ଧ୍ୱନି ମୁରୁଛେ ।
ଅପୂର୍ବ ମିଳନାମୃତେ ସୃଷ୍ଟି ଉଦ୍‌ବେଳିତ,
ସବୁ କରେ ଏକାକାର ଅପୂର୍ବ ସଙ୍ଗୀତ ।
ସକଳ ହଜିଲା ଧନ ମିଳେ ମୋର ତହିଁ,
ଲକ୍ଷ କୋଟି ପଦ୍ମଫୁଲେ ହସେ ଜୀର୍ଣ୍ଣ ମହୀ;
ହସଇ ଶ୍ମଶାନ-ଭସ୍ମ, ଚିତା ଉଠେ ଥରି;
ଶିବ ଆଶୀର୍ବାଦ କାର ଶୂନ୍ୟ ପଡ଼େ ଝରି ।

୧୨—ସେହି ଶୁଭ ଆଶୀର୍ବାଦେ ଲଭେ ତୁମ ସତ୍ତା
ଶୁଣଇ ନୟନ ମୁଦ ହଜିଲି ବାରତା ।
ସକଳ ଅପ୍ରିୟ ପ୍ରିୟ ମୃତ ଉଠେ ଜୀଇ ।
ଅଘଟଣି ଘଟଣି ଏ କଲା କେଉଁ ବିହି ?
କିଏ ବଜାଇଲା ବଂଶୀ ? ଏ କାର ପ୍ରକାଶ ?
ଦେଖଇଁ ଅଦୂରେ ବନ୍ଧୁ କର ସ୍ମିତ ହାସ !
ପୂର୍ବ ଅନୁରାଗ-ସୁଧା ଲଗିଛି ଅଧରେ,
ପୂର୍ବପର ଦିବ୍ୟ ଶାନ୍ତ ଦୀପ୍ତ ନୟନରେ !
ଅପୂର୍ବ ଉଜ୍ଜ୍ୱଳ ବିଭା ପ୍ରଶାନ୍ତ ଆନନ,
ମୋ ବିରହ ଗ୍ଲାନି କରେ ତୁଚ୍ଛ ଅକାରଣ ।
ସେ ହାସେ ଝଲସେ ଶତ ଜନମାର ସ୍ନେହ,
ପିତୃ ଆଶୀର୍ବାଦ ପୁଣି ସକଳ ମୋ ଶ୍ରେୟ,
କିନ୍ତୁ ପ୍ରୀତ ଶିବ-ଇଚ୍ଛା କରଇ ପ୍ରସାର ।
ଅଦୃଷ୍ଟ ହେ ଧ୍ୱନିକାର ! ଘେନ ନମସ୍କାର !

୧୩—ଧ୍ୱନିରୁ ଜନମି ବନ୍ଧୁ ମିଶିଛ ଧ୍ୱନିରେ,
ଦେବ ନାହିଁ ଧରା ସ୍ୱାର୍ଥ ଅଶ୍ରୁ ବନ୍ଧନୀରେ ।
ଶୂନ୍ୟର ଶବଦ ତୁମେ ଲଭିଛ ବିଶ୍ରାମ—
ମହାଶୂନ୍ୟେ ! ପୂରିଅଛି ସ୍ରଷ୍ଟା ମନସ୍କାମ ।
ବିପୁଳ ତରଙ୍ଗ ସିନ୍ଧୁ ବିନ୍ଦୁଁ କ୍ଷଣେ ଉଠି,
ଭାଙ୍ଗି ବାଲସ୍ତୂପ ପୁଣି ଯାଇଛି ଲେଉଟି ।
କ୍ଷଣିକ ପ୍ରକାଶେ ତବ ସାର୍ଥକ ଜନମ,
ଶୂନ୍ୟ ଭଜି ଭୁଲିଅଛ ମରଲୋକ ଭ୍ରମ !

ଅଜର ଏ ଦିବାସମ ଅଲୋକ-ଜ୍ଞମନ !
ବିଦ୍ୟୁତ-ଚମକ, ଦିବ୍ୟ-ଦୀପ୍ତି-ଅନୁପମ !
ସ୍ଫୂର୍ତ୍ତି ହୋଇ ମହାଶୂନ୍ୟେ ଲଭିଅଛ ଲୟ,
ଗାଇଛ ଅମୃତ ସୃଷ୍ଟି ସୃଷ୍ଟି-ଧାତା ଜୟ !
ହେ ଅମୃତ ଧ୍ୱନି ଧନ୍ୟ ତୁମର ବିଭୂତି !
ଯାଇଅଛ ଯାଅ ବନ୍ଧୁ ! ଥାଉ ପୁଣ୍ୟ ସ୍ମୃତି ।

୧୪—କୈଶୋରର ମରୁବାତ୍ୟା ମନେ ପଡ଼େ ଅଜ
ପୁରାତନ ଇତିବୃତ୍ତ !—ଉଠିଲା ସେ ବାଜ...
ସନ୍ଦେହ ଦୁନ୍ଦୁଭି ମନ୍ଦ୍ରେ ପ୍ରାଣେ ଦେଲା ତ୍ରାସ,
ଚିର ଅନଭିଜ୍ଞ ଭ୍ରାନ୍ତ କ୍ରୂର ଅବିଶ୍ୱାସ ।
ସନ୍ଦଗ୍ଧତା ଅଟ୍ଟହାସେ ଜାଗିଲା ପିପାସା
ଶୁଣିବାକୁ ମାନବର ଚିରନ୍ତନ ଭାଷା !
ଜୀବନର ସ୍ପର୍ଶ ଲାଗି ପରାଣ ବ୍ୟାକୁଳ,
ବିଶ୍ୱାସ ଭରସା ଅଟେ ନେତ୍ରେ ଅଶ୍ରୁ ଜଳ ।
ଏତେ ବଡ଼ ଦେଶ ଗୋଷ୍ଠୀ ଜଗଦଗ ଗୃହେଁ,
ଲୋକ ଭଳି ଜଣେ ଲୋକ ନ ଦେଖିଲି କାହୁଁ
ବ୍ୟବସାୟୀ ବଣିକର ଭିଡ଼ ଚାରିପାଖେ !
ନୀଚ ସ୍ୱାର୍ଥ ସ୍ୱଳ୍ପବୁଦ୍ଧି ଜୀବନର ଡାକ—
ଶୁଣିବା ସମ୍ଭବ କେବେ ?......
ଶୁଣିଥିଲ ତୁମେ !
ଲତା-କୁଞ୍ଜ-ପ୍ରସ୍ରବଣ ସମ ମରୁଭୂମେ ।

୧୫—ନିଃସଙ୍ଗେ ଦେଇଛ ସଙ୍ଗ ବଢ଼ାଇଛ କର,
ପରମ ଉଦାର ବନ୍ଧୁ ଫେଡ଼ିଛ ଅନ୍ତର !

ସ୍ନେହ ମୈତ୍ରୀ ଅନୁକମ୍ପା ଦିବ୍ୟ ଭୂମାନନ୍ଦ,
ପରିପୂର୍ଣ୍ଣ ସେ ଅନ୍ତରେ, ଯହିଁ ମଲ୍ଲଦ୍ୱନ୍ଦ୍ୱ !
ପିତାର ଅଶ୍ୱାସ ପ୍ରୀତି ବନ୍ଧୁ ଉତ୍ତେଜନା,
ସାଧକର ସତ୍ୟନିଷ୍ଠା ଅମୃତ ମୂର୍ଚ୍ଛନା,
ଦେଖି ତହିଁ ଶାନ୍ତ ପ୍ରାଣ ଅବିଶ୍ୱାସ ଫଣୀ,
ପିଇଛି ଜୀବନ ରସ ପ୍ରମାଦ ନ ଗଣି ।
ଅଜ ତୁମେ ନାହିଁ ପାଶେ ! ଲାଗେ ସ୍ୱପ୍ନ ପରି !
ଶୂନ୍ୟ ପ୍ରାଣ କାନ୍ଦେ ଯେହ୍ନେ ନିଃସଙ୍ଗ କୁରରୀ ।
ସ୍ଥବିର ଅଛନ୍ତି କେତେ ଦେଖାଇ ନୟନ,
ମାତ୍ର ବହିବ କେ କହ ଅନନ୍ତ ଯୌବନ ?
ଖୋଜି ବୁଲେ ମରୁପ୍ରାନ୍ତେ ସ୍ଥାନ କାହିଁ ?...
ହାୟ !...
ବିଦାୟ ତରୁଣ-ବନ୍ଧୁ ବିଦାୟ ! ବିଦାୟ !

୧୬— କଭି ଅସ୍ତିଲଣି ଲେଲିହାନ ଶତାନଳ !
ବାସାରେ ନୟନ ମୁଦେ ଏକାକୀ କମଳ !
ଯାଏ ନଦୀ ପରପାରେ ନିଃସଙ୍ଗ ରଥାଙ୍ଗ;
ଭବରଙ୍ଗଭୂମି କ୍ରୀଡ଼ା ଧୀରେ ହେଲା ସାଙ୍ଗ ।
ଦିବସ କଳ୍ପନା ଆହା ମିଶିଲା ଅନ୍ଧାରେ ।
ଅନନ୍ତ ଭରସା କାର ରୁଦ୍ଧ କାରାଗାରେ !
ଯହିଁ ବନ୍ଦୀ ବହେ ଦଗ୍ଧ-ଦୁଃସହ-ଜୀବନ,
ବିରହ ମରଣ କିନ୍ତୁ ନୁହେଁ ଅକାରଣ ।
ସେହି ଧ୍ୱନି ? ସେହି ବାଣୀ ?......ପରମ ଆଶ୍ରୟ ?
ଯା ପାଇଁ ଅନ୍ତର ତବ ନିର୍ଦ୍ୱନ୍ଦ୍ୱ ନିର୍ଭୟ ?

ଶୁଣେ ସେ ନିର୍ଝର ବାଣୀ ଅସ୍ପଷ୍ଟ ସନ୍ଧ୍ୟାରେ,
ପ୍ରକାଶ ପରମ ଜ୍ୟୋତି ମୋହ-ଅନ୍ଧକାରେ ।
ସେ ଜ୍ୟୋତି ପ୍ରକାଶ ଯେଣ୍ଣେ ତୁମେ ଅଗ୍ନିକଣା ।
ଅଜ୍ଞାନ ଲୋଚକେ ଦୃଷ୍ଟି ନୁହେଁ ଅଜ ବଣା ।

୧୭—ନିମୀଳିତ ହେଉ ଦିବା ପଦ୍ମ ନିମୀଳିତ,
ମଙ୍ଗଳ ପଞ୍ଚକେ କ୍ଷଣେ ଧ୍ୱନି ଅନ୍ତହିତ,
କୌମୁଦୀ ଝାଉଁଳି ପଡ଼ୁ ଘନ ବନାନୀରେ,
ଅମୃତର ସ୍ମୃତି ଅଜ ଭୁଲି ହେବ କିରେ ?
ତରଙ୍ଗ ଲେଉଟି ଯାଉ ଦିଗନ୍ତ ସାଗରେ,
ସ୍ଫୁରିତ ବିଦ୍ୟୁତ ଅଭ୍ର ମିଶୁ ଅନମ୍ବରେ,
ନ ଫେରୁ ପଞ୍ଚକେ ପ୍ରୀତି-ମଦିର-ନୟନ,
ମଙ୍ଗଳ କୁସୁମ, ଶୁଖୁ ଝିଙ୍କର-ଜୀବନ,
କର୍ଣ୍ଣେ ମରୁ ପଡେ ମୋର ବ୍ୟଥିତର ଭାଷା,
ମରିବାର ନୁହେ ଅଜ ଅମୃତର ଆଶା ।
ଭୁଲି ହେବ ଅଜ ସତେ ଅଦୃଷ୍ଟ-ବିଧାନ,
ଶିବ-ଆଶୀର୍ବାଦ, ବ୍ୟଥିତର ପ୍ରାଣାରାମ ?
ଯେ ବିଧାନ ବନ୍ଧୁ ତୁମେ କରିଛ ସ୍ୱୀକାର,
ନୈରାଶ୍ୟ ମରଣ ଦିଲା କରେଁ ନମସ୍କାର ।

୧୮—ଯାଉଅଛ ? ଯାଅ ।···ପୂଜ୍ୟ, ପରମ ଅତ୍ମୀୟ ।
ଅନ୍ତିମ ବେଳାରେ ନିଃସ୍ୱ ନମସ୍କାର ନିଅ ।
ନ କରୁ ଏ ଅଶ୍ରୁ-ସ୍ୱାର୍ଥ-ମୋହ ଗତିରୋଧ,
ଜାଣିଛ ତା କୁସଂସ୍କାର, ମୃତ୍ୟୁ ପ୍ରତିଶୋଧ ।

ଶରମୁକ୍ତ ତୁମେ ବନ୍ଧୁ ଲଭି ବ୍ରହ୍ମଭୂତ,
ମରଣକୁ ଅମୃତରେ ଦେଇଛ ଅଦ୍ଭୁତ ।
ଦେଖିଲି ଜୀବନେ ଯାହା ଆନନ୍ଦ ଅମୃତ,
ମୃତ୍ୟୁ ଅଙ୍କେ ଭଲ ତାକୁ ପ୍ରାଣେ ଦୃଢ଼ୀଭୂତ ।
ସୁପ୍ରଶାନ୍ତ ଦିବ୍ୟ ଜ୍ୟୋତି ଦିଶେ ନିର୍ବିକାର ।
ସୁଦୂର ଦିବସ ଅଗ୍ର ଆଲୋକ ପ୍ରସାର ।
ସେ ଆଲୋକ ଯୁଗେ ଯୁଗେ ଲଭଇ ଜନମ
ଯେ ଜ୍ୟୋତି ସଞ୍ଚାରେ ପଥ-କୁଟିଳ-ଦୁର୍ଗମ-
ଅବିଶ୍ୱାସ ଅନ୍ଧକାରେ ଦିଶଇ ସରଳ ।
ଅମୃତ ପ୍ରତୀତ ଅଙ୍କେ ମରଣ-ଗରଳ ।

୧୯—ଅମୃତ ମରଣ-କୂର ମଙ୍ଗଳ ଅହ୍ୱାନ !
ଆନନ୍ଦ ଭରସା ଦୂର ପ୍ରଦୀପ ନିର୍ବାଣ !
ମଙ୍ଗଳ ସୃଷ୍ଟିରେ ଦିଶେ ସକଳ ସୁନ୍ଦର,
ପରମ ଆନନ୍ଦ ସ୍ପର୍ଶେ ସବୁ ଅନଶ୍ୱର ।
ଜୀବନ୍ତେ ଯେ ଦୀକ୍ଷା ଦେଲି ମରଣେ ସେ ଗାନ
ଗାଅ ଉଚ୍ଚେ ଅସ୍ତବେଳା । ଗାଅ ନିଃସ୍ୱ ପ୍ରାଣ ।
ଅଟଳ ବିଶ୍ୱାସେ ଅଶ୍ରୁ ଭିତ ହେଉ ଲୟ,
ଗାଏ ମୁଁ ଜୀବନ ଜୟ ଅମୃତର ଜୟ ।
ମଙ୍ଗଳ ସେ ଧାତା ମୃତ୍ୟୁ ଯାହାର ବିଧାନ—
ଯେ ଶିବ ପ୍ରକାଶ ତୁମେ ! ଗାଅ ଜୟ ଗାନ !
ତୁଚ୍ଛ ସେ ଶ୍ମଶାନ ଭସ୍ମ, ତୁଚ୍ଛ ଚିତାନଳ ।
ସର୍ବନିର୍ବାଣ ସୃଷ୍ଟି-ଅମୃତ-କମଳ ।
ସେ ଅମୃତେ ଲୀନ ତୁମେ । ନୁହ ଅସହାୟ,
ତହିଁ ଲଭେଁ ଦିବ୍ୟଗତି । ବନ୍ଧୁ ହେ ବିଦାୟ !...

—୨୧୦

୨୦—ଖସିଛୁ କ୍ଷୋଭଙ୍କ ନର୍ଦ୍ଦ । କେତେ ଦିନ ଅଜ ?
ପୁଚ୍ଛେ ଅପଣାକୁ,...ସବୁ ଯେହ୍ନେ ଛାଯ୍ନାବାଜ ।
ଶୁଣିଛୁ କି ନାହିଁ ଅଗ୍ନ୍ୟୁତ୍ତ ନିମନ୍ତ୍ରଣ ।
ସହସ୍ର ତାଡ଼ନ ପୁଣି କର୍ମର ପ୍ଲାବନ ।
କି ଉଦ୍ଦେଶେ ଧାଇଁ ଗ୍ଲେଲେ ମଉ ଏ ଜନତା ?
ନାହିଁ କି ସେ ଦେଶେ ଜଣା ମରଣର ବ୍ୟଥା ?
ବୃରେ କାର ଅଟ୍ଟହାସ ?...ପୁଣି ଯାଏ ଶୁଭ—
ପାଞ୍ଚଜନ୍ୟ ସମ କାର ନିଷ୍ଠୁର ଦୁନ୍ଦୁଭି ?
ଅଗ୍ରସର ! ଅଗ୍ରସର ! ନାହିଁ ଅବକାଶ !
ସମ୍ମୁଖେ ମଙ୍ଗଳ ବର୍ତ୍ମ , ଊର୍ଦ୍ଧ୍ୱେ ମହାକାଶ ।
ଭଗ୍ନଙ୍କାନ୍ତ ସୈନିକ ତୁ । କି ଦେଖୁ ଉଦାସେ
ଅବଧୂତ ବର ବୃଥା ମରୁ ଉପବାସେ ।
ସ୍ମୃତିରେ ବଜାସେ ତବ ଆତ୍ମ-ଅନୁଭୂତି ।
କରମେ ବିକଶେ ସେହି ମଙ୍ଗଳ-ବିଭୂତି ।

୨୧—ସତ୍ୟଧର୍ମ ଅଦରଣ ଲାଗି ଯେ ବାହିନୀ—
ଯୁଝିଲେ ସମରେ, ତୁମେ ଅନ୍ତିମ ସଇନି ।
କାଳ କଷଟିରେ ତେଜ ପ୍ରଭା ପରୀକ୍ଷିତ ।
ଅଟଳ ପର୍ବତ ପ୍ରାୟେ ବୀର୍ଯ୍ୟ ଅପ୍ରମିତ ।
ପଛଘୁଞ୍ଚା ଦେବା ଜାଣି ନ ଥିଲ ଜୀବନେ;
ଧନ୍ୟ ଯେ ଦେଖିଛୁ ସତ୍ୟନିଷ୍ଠା ରଣାଙ୍ଗନେ ।
ସଂଗ୍ରାମର ହାନି ଲାଭ କରିବା ଗଣନା,
ଦୁର୍ବଳ ପଦାତି ସମ ନ ଥିଲ ତ ଜଣା ।

ପ୍ରଚ୍ଛନ୍ନ ସେ ଅଗ୍ନି ତେଜ ଧ୍ୟାନନେତ୍ର ତଳେ,
ବିଶ୍ୱାସ ବଳିଷ୍ଠ ଶାନ୍ତ ବଦନ ମଣ୍ଡଳେ !
ସତ୍ୟ-ସେବା ! ତେଜ ତବ ବ୍ରହ୍ମ-ଭୂତ-କ୍ଷୁଧା !
ଧନ୍ୟ ସେ ଲୁଣ୍ଠିଛୁ ପ୍ରାଣ ସୁରଧୂନି-ସୁଧା ।
ଦଣେ ନାହିଁ ଆଉ କାହିଁ ସମଯୋଦ୍ଧା ଏକ,
ସାର ହେଉ ଏ ଜୀବନେ ତବ ସ୍ମୃତି ଟେକ ।

୧୧— ଢାଳି ଅସରାଏ ବୃଷ୍ଟି ···ନିର୍ମଳ ଆକାଶ ।
ପରଶେ ପ୍ରଭାତେ ପ୍ରାଣେ ତାର ଗୈବୀ ଶ୍ୱାସ ।
ଏସନେ ଅନ୍ତରକ୍ଷତ ଲଘୁ କରେ ପର,
ପ୍ରିୟଜନ ବିରହରେ ଲୋତକ ଅସର ।
ଅଶ୍ରୁ ଦୀନ ଜୀବନର ବିପୁଳ-ଗୌରବ,
ଅନ୍ଧାର ମାଣିକ୍ୟ ପ୍ରିୟ-ବ୍ୟଥା ଅନୁଭବ ।
କହ ନାହିଁ ଅକାରଣେ, ଅହେ ଜଡ଼ବାଦୀ,
ପରମ ଐଶ୍ୱର୍ଯ୍ୟ ଟେକ କ୍ଷଣିକ-ସମାଧି ।
ସ୍ଥାନଚ୍ୟୁତ ଉଦାସୀନ ନିଃସଙ୍ଗ ପଥଜୀ,
ରଜନୀ ଦୁର୍ଦ୍ଦିନ ଅନ୍ତେ କାହିଁ କର ଗତି ?
କେଉଁ ଧ୍ୟାନଲୋକେ ? ଦୂରେ ? ···ଅମୃତ ସନ୍ଧାନେ ?
ତରୁଣ ଦିବସ ଡାକ ଶୁଭିଲା କି ପ୍ରାଣେ ?
ଶାନ୍ତ ତବ ଚିତାନଳ ! ଭସ୍ମ ଦଣେ ଖାଲି !
ମୁକ୍ତ ବିହଙ୍ଗମ ଦୂରେ ଯାଇଅଛୁ ଚଳି !

୧୨— ଅବିରତ ବିଦଗଧ ଏ ମୋ କଳେବର,
ଏ ଇନ୍ଦ୍ରିୟ ଭୂତଗ୍ରାମ ଭସ୍ମ କେତେ ଥର

ନବୀନ ଏ ଦେବାସମ ସ୍ୱରୂପ ପ୍ରକାଶ,
କାଳ ରଖିଅଛି ସ୍ମୃତି ! କାହିଁକି କାରଣ ?
ଶୈଶବ ଲଭିଛି ଲୟ ତରୁଣ ସ୍ୱପନେ,
ତାରୁଣ୍ୟ ସ୍ଥବିର-କାନେ, ସ୍ଥବିର ମରଣେ !
ସର୍ବସ୍ୱ ସ୍ମୃତି ପୁଣ୍ୟ ଜୀବନ-ବିଭୂତି !
ଅମୂଲ୍ୟ ସମ୍ପଦ ନିତ୍ୟ-ପ୍ରାଣ-ଅନୁଭୂତି ।
ଗୋଟି ଗୋଟି ହୋଇ ତତ୍ତ୍ୱ ଗୁନ୍ଥିଲେ ଭଜାଣି,
ସାର କର ପ୍ରିୟ-ସ୍ମୃତି ନିତ୍ୟ-ସୁଧା ବାଣୀ ।
ନୀରବତା ଧ୍ୟାନ ଭଙ୍ଗେ କ୍ଷେପଣୀ ଶବଦ,
ତୋ ନୟନ ମୁଦ ଗୁହାଁ ଅନ୍ତର ସମ୍ପଦ ।
ପରମ ସୁହୃଦ-ପୂଜ୍ୟ-ଦିବ୍ୟ-ଗତ ସ୍ମର,
ଫିଟାଇ ଦେ ନଦୀ-ଘାଟୁ କ୍ଷୁଦ୍ର ତୋର ତରି ।

୨୪—ହେ ଅନନ୍ତ ଭୂମା ! ସୃଷ୍ଟି-ପ୍ରାଣ-ମୂଳାଧାର ।
କ୍ଷମ ଶତ ଅପରାଧ ମାନସ ବିକାର ।
ଅଜ୍ଞାନ ମାନବଶିଶୁ ଅନଭିଜ୍ଞ ଚିର !
ବିଶ୍ୱାସ ଆଶାରେ ତାର ନତ କର ଶିର !
ଆନନ୍ଦ ପ୍ରକାଶ ତବ ମଙ୍ଗଳ ବିଧାନ !
କୀଳବିଦ୍ଧ ନ କରୁ କ୍ଷୁଦ୍ର ଅବା ସ୍ୱଳ୍ପ ଜ୍ଞାନ !
ଅଭିମାନ ପ୍ରଜ୍ଞା ଦମ୍ଭ ହେଉ ପରାହତ,
ସାର ହୁଅ ଏ ଜୀବନେ ଅମୃତ ଶାଶ୍ୱତ !
ସର୍ବସ୍ୱ ବିକାଶ ତବ ! ହେ ଅଶ୍ରୁତ ଧ୍ୱନି !
ଜୀବନ ମୃତ୍ୟୁରେ ଶୁଭେ ନିତ୍ୟ ଆଗମନୀ !

ସୁବିପୁଳ ପ୍ରାଣଶକ୍ତି ! କେବେ ପ୍ରକାଶିତ—
ସଲିଳେ ଯେସନେ କୂର୍ମ !...
ପୁଣି ସଙ୍କୁଚିତ !
ଜାଗ୍ରତ ମାତର ସତ୍ତ୍ୱ ! ନିତ୍ୟ ନିରଞ୍ଜନ !
ବିଭୂତିରେ ହସେ ସନ୍ତୁ-ଚିତ୍ତ-ବୃନ୍ଦାରଣ୍ୟ ।

୨୫—ଇଚ୍ଛାମୟୀ ! ଇଚ୍ଛାଶକ୍ତି ନ ବୁଝଇ ଦୀନ,
ଅହ୍ମଦୈନ୍ୟେ ନିରବଧି ଝୁରନ୍ତି ମୁଁ ମଳିନ ।
ଯାଏ ପ୍ରାଣ ଆସେ ପୁଣି ! ଖେଳେ ଊର୍ଣ୍ଣନାଭି
କରୁଣା ପ୍ରକାଶ ତବ ଅଶ୍ରୁ କରେ ଦାବି !
କ୍ଷମ ଅପରାଧ କ୍ଷମ ! ମୁଁ ଅଶ୍ରୁ ଆତୁର !
ହରିଛି ବିଶ୍ୱାସ ଦିବ୍ୟଜ୍ଞାନ ମୃତ୍ୟୁ କ୍ରୂର ।
ଅଜ ଯେ ମାନବ ଅମ୍ଭା ହରିଛ କୌଶଳେ—
ବଞ୍ଚିଥିଲି ଯେସ୍ନେହ ପ୍ରୀତି-ପୁଣ୍ୟ-ପ୍ରଭା ତଳେ ।
ସେ ପ୍ରାଣସ୍ୱରୂପେ ତବ ସହଜ ପ୍ରକାଶ ,
ହଜିବାରେ ସ୍ୱାଭାବିକ ଶିଶୁ-ଅବିଶ୍ୱାସ ।
ପ୍ରସାରିତ ଶକତିକି କଲି ସଙ୍କୁଚିତ !
କୀଡ଼ନକ ବିନେ ପ୍ରଭୁ ! ନୁହଇ ବିରତ—
ଶିଶୁ କାନ୍ଦିବାର ! ତେଣୁ ଅପରାଧ କ୍ଷମ ।
ମାତର ଅମୃତ ସତ୍ତ୍ୱ । ସତ୍ୟ ଅନୁପମ ।



# ଭିନ୍ନ ରୂପାନ୍ତର

ଏଥର ବ୍ୟାପିଲା ଗ୍ରାମେ ପ୍ରବଳ ବସନ୍ତ,
ଲୋଟିଲେ ଧରାରେ ଯେତେ ନାହିଁ ତାର ଅନ୍ତ ।
କେତେ ହେଲେ ବିକଳାଙ୍ଗ, ଚକ୍ଷୁ ଗଲା ଫୁଟି,
ଶ୍ରବଣ ବଧିର ହେଲା, ରୂପ ଗଲା ତୁଟି,
ପରମ ଆତଙ୍କ ବ୍ୟାପିଗଲା ଘରେ ଘରେ;
କେତେ ଧୂପ ଆରାଧନା ଦେବୀ ଉଦ୍ଦେଶ୍ୟରେ ।
କେତେ କାଳ୍ପନିକ ଗଳ୍ପ ଦେବତା ପ୍ରତାପ,
ସକଳ କହନ୍ତି ମାତ୍ର ଦୈବ ଅଭିଶାପ ।
ରୋଗ ଶେଯେ ପଡ଼ି ପଡ଼ି ଶୁଣେ ମୁଁ ରୂପସୀ,
ବସନ୍ତ ଜ୍ୱାଳାରେ ପାରେ ନାହିଁ ଉଠି ବସି ।
ମାସ ଦୁଇ ପରେ ଦୁର୍ବିପାକ ଅବସାନେ,
ରହିଗଲେ ଯେତେ ତହିଁ ମଧ୍ୟରୁ ମୁଁ ଜଣେ;
ମାତ୍ର ନାହିଁ ପୂର୍ବ ରୂପ, ବିକଳାଙ୍ଗ ମୁଖ,
ଦର୍ଶକ ଆସିଲେ ଯେତେ ପ୍ରକାଶିଲେ ଦୁଃଖ ।
କେ କହେ ସୋହାଗ କଣ୍ଠେ-ଯୁଗ୍ମନେତ୍ରେ ସ୍ନେହ-
କି କଲା ନିଷ୍ଠୁର ଦୈବ ଚମ୍ପାଫୁଲ ଦେହ !
କେ ପୁଣି କରଇ କେତେ ରୂପର ବ୍ୟବସ୍ଥା,
ସକଳ ଶୁଣି ମୁଁ ହସେ ! ନାହିଁ ମୋର ବ୍ୟଥା !
ନ ଜାଣେଁ କହିବେ କିବା ଅନାଗତ ପତି,
ଅବା ଫେରାଇବେ ମୁଖ ଘୃଣାଭରେ ଅତି !
ଅବା ଅଶ୍ରୁ ଦୀର୍ଘଶ୍ୱାସେ ନ ଚାହିଁବେ ମୁଖ !
ଅସ୍ଥିର ମୋ ମାତା ଭାଳ ! ନାହିଁ ମୋର ଦୁଃଖ !

ମୋ ସୁନ୍ଦର ମୁଖେ ଦେଖି ଶତ ଶତ ଦାଗ,
ସ୍ବହ୍ନିଁ ମୁଖ ଦରପଣେ ବଢ଼େ ଅନୁରାଗ ।
ଅପୂର୍ବ ଗରବେ କମ୍ପା ବକ୍ଷ ହୁଏ ସ୍ଫୀତ,
ରମଣୀ ମରମେ କାଳ ଅମୃତ ସଙ୍ଗୀତ—
ସ୍ଫୁରେ ଅନୁକ୍ଷଣେ ! ପୁଲକ ତା ମନ ପ୍ରାଣ !
ଲଭିଛି ମୁଁ ଅଳ୍ପ ମୂଲ୍ୟେ ସ୍ୱର୍ଣ୍ଣର ସନ୍ଧାନ
ନବ ଅଭିସାର ଲାଗି ଅନ୍ତର ଆକୁଳ,
ବସନ୍ତ ଯାଇଛି ଦେଇ କବା ରୁପ ଫୁଲ ।



## * ଦୁର୍ଗରକ୍ଷା

—୧—

କେବଳ କି କୋଳାହଳ ? କୋଳାହଳେ ଗୌରବ ପ୍ରକାଶ ?
ବିଶ୍ୱେ ଏ ଜାତି ପ୍ରାଣେ ଯେସନେ ଏ ତୀବ୍ର ଉପହାସ !
ତୀବ୍ର ବ୍ୟଙ୍ଗ ! ରଙ୍ଗ, ରସ, ବାହୁସ୍ଫୋଟ, ଅତୀତ ହୁଙ୍କାର—
କାଳ ନିଷ୍ଠୁର ପରଖୁ ଲଭିବ କି ଏସନେ ନିସ୍ତାର ?
ପ୍ରାଣହୀନ ହୀନବୀର୍ଯ୍ୟ ନାହିଁ ଯାର ତିଳେ ଆତ୍ମବୋଧ,
ଅଲକ୍ଷ୍ୟେ ସଞ୍ଚିତ ଭାଗ୍ୟେ ଅଲଙ୍ଘ୍ୟ କାଳର ପ୍ରତିଶୋଧ !
ହୋଇଛି ସହଜ ଲଭ୍ୟ ଜୀର୍ଣ୍ଣ ଦୁର୍ଗ, କାଲି ଅବା ଜୟ,
ପ୍ରଚ୍ଛନ୍ନ ବିଜୟ ପଛେ ପରାଭବ ଗ୍ଲାନି ମୃତ୍ୟୁ ଭୟ !
ନିର୍ଜୀବ ସୈନିକ ଯେତେ ସମବେତ କର କୋଳାହଳ
କରୁନାହିଁ ଅନୁଭବ ? ଆତ୍ମଦୈନ୍ୟ ନୁହ କି ବିକଳ ?
କେ କରିବ ଦୁର୍ଗ ରକ୍ଷା ? ଜୀବନର ନବ ଅଭିଯାନ—

* ନବୋତ୍କଳ ପ୍ରଦେଶର ପ୍ରଥମ ସ୍ମାରକୋତ୍ସବ ଉପଲକ୍ଷେ ।

ଯା ଯୋଗ୍ୟ ସମ୍ଭବ ନିତ୍ୟ କାହିଁ ସେହି ଦୁର୍ଜ୍ଜୟ ପବନ ?
ଦୁର୍ବଳ ନିର୍ଜ୍ଜୀବ ହାତେ ଦେଖି ତେଣୁ ବିଜୟ କେତନ—
"ସହାୟ ଦେବତା ତୁମେ !" ରୁଦ୍ଧ ବନ୍ଦୀ କରେ ନିବେଦନ ।

—୨—

କହେ ବନ୍ଦୀ ଶାସ୍ତ୍ର ନେବେ, ଦୁର୍ବଳ ଜାତିର ଭାଗ୍ୟବିଧି ।
ସମ୍ବାଦ ରଖିବେ ସତେ ଦେଲ ଅଜ ଯେ ଅମୂଲ୍ୟ ନିଧି ?
ଧରତେ ଦୁହର ତଳେ; କାହିଁ ନିଷ୍ଠା, କାହିଁ ବା ଶକତ ?
କାହିଁ ସେ ପୌରୁଷ ଯାର ତେଜେ ମରେ ଦୀନତା ଦୁର୍ଗତ ?
ସମବେତ ଯୋଦ୍ଧୃ ଯେତେ ଅସ୍ଫାଳନ-ଶକ୍ତି-ନିପୁଣ,
ବିହ୍ୱଳ ଯେସନେ ଶ୍ୱାନ ପଲ ପାଶେ ନିରେଖି ପିଶୁନ ।
ଅର୍ଜ୍ଜିନାହିଁ କହୁ ଜଣେ ନର ଅଖ୍ୟା ମାନବ ଗୌରବ,
ସର୍ବେ କୋଳାହଳପ୍ରିୟ, ଛାଡ଼ି ନାହିଁ ଏ ଜାତି ଶୈଶବ ।
ନ ଦଶେ ପୌରୁଷ ନିଷ୍ଠା ଦମ୍ଭେ ଯାର ଧରା ଉଠେ ଥର,
ଉଦାର ସେ ମାନବତ୍ୱ ଅନ୍ଧକାର ମରେ ଯାକୁ ଡର—
ଯହୁଁ ଦଶେ କାହିଁ ତଳେ ! ଜପୁଛଇ ତେଣୁ ଶଙ୍କା ଭୟ,
ଦୁର୍ବଳର ସ୍ୱାଧୀନତା ପରାଜୟ ସମାନ ନିଶ୍ଚୟ ।
ସହାୟ ଦେବତା ତୁମେ ଦୁର୍ବଳ ଜାତିର କର୍ଣ୍ଣଧାର
ଦିଅ ବୀର୍ଯ୍ୟ ସତ୍ୟନିଷ୍ଠା ଶିଖାଅ ନିଶାଣ ତୋଳିବାର ।



# ବନ୍ଦୀଦେଶ

ସ୍ୱେଚ୍ଛାରେ ମୁଁ ବନ୍ଦୀ ରାଜା ! ମୋର ପରୱାଣ—
ତବ ରାଜଦରବାରେ ଅମ୍ଳ-ଅପମାନ !
ଯହୁ ସିଂହାସନେ ବସି କରଇ ବିସ୍ତର
ଅଜ୍ଞାନ, ତମିସ୍ର, ଦମ୍ଭ, ସ୍ୱାର୍ଥ, ସ୍ୱେଚ୍ଛାଚାର,
ତହିଁ ଶୃଙ୍ଖଳିତ ମୋର ପରମ ଗୌରବ,
ଗାଇନାହିଁ ସ୍ତୁତି ବାକ୍ୟ ସେତକ ରୌରବ ।
କହନ୍ତି ଅପାବେ ଦାନ ବାବଦୁକପର
ପବନ ଅମୂଲ୍ୟବାଣୀ ଯୋଡ଼ହସ୍ତ କର,
ସେତକ ଅଶ୍ୱାସ । ମୃତ୍ୟୁଭୟ ମହାରାଜ ?
କୁଳଶୁଁ କଠୋର ପ୍ରାଣ ଯାର, ମୃତ୍ୟୁ ବ୍ୟାଘ—
ଡରଇବ ତାକୁ କିସ ? ପୂର୍ଣ୍ଣ ହେଉ ଅଭିଳାଷ,
ବୃଥା ବାକ୍ୟେ ନ କରନ୍ତୁ ଅମ୍ଳ-ଉପହାସ ।
ମୃତ୍ୟୁ କାରାଗୃହ ଅବା ଚିର ନିର୍ବାସନ,
ଅକାତରେ ନେବ ବରି ଦୀନ ଅକିଞ୍ଚନ ।
ଦୁଃସହ ଏ ରାଜ୍ୟେ ବାସ ! ଯହିଁ ସ୍ୱେଚ୍ଛାଚାର—
ସ୍ୱାଧୀନତା ନାମେ କରେ ଅସତ୍ୟ ପ୍ରଚାର—
ପାଳକ ଆସନେ ଯହିଁ ବସେ ଦାମ୍ଭିକତା,
ଅମ୍ଳ-ଅଭିମାନ, ତହିଁ ଶୋଭେ ନୀରବତା ।
ପଚାରିଲେ ବୋଲି କଲି ନିଷ୍ଠୁର ଉତ୍ତର,
ନିର୍ଦ୍ଦୟେ କହଇଁ ମାନ ଇଚ୍ଛା ଯାହା କର ।
ନିତ କଳତେ ଅସହାୟ ମକ୍ଷିକା ମଶକ
ଅଜ୍ଞାନେ ସଜ୍ଞାନେ ଦଳେ ମାନବ ଭକ୍ଷକ;

—[illegible]

ଅଳ୍ପ ପରତୃପ୍ତି ଲାଗି ଏସନେ ରାଜନ
ଦଣ୍ଡିବ ପ୍ରବଳ ଇଚ୍ଛା ? ନୋହେ ଅଭାଜନ ।
ଅବା ସେ ଅନ୍ତରେ ହେଲେ କରୁଣା ଉଦୟ,
ହେବ ଅବା ହେୟଯୁଙ୍କାନେ ମୁକତ ଅଭୟ,
ମାଗ ରାଜ୍ୟ ସିସୀମାରେ ଅଭ୍ର ଜଳସ୍ପର୍ଶ—
ନ କରିବି ପଣ ମୋର ଅନ୍ତିମ ଆଦର୍ଶ ।
ନରକରୁ ବଳି ହୀନ ଧିକ୍କ ସେ ଜୀବନ,
ପରପୁଷ୍ଟ କଟର ଯାକୁ ଏହୁ ସମୀରଣ—
ଏ ହୀନ ମୃଉତା, ଘୃଣ୍ୟ ଅସ୍ପୃଶ୍ୟ ସଲୀଳ,
ନ ପାରିବି ରହି ରାଜା ଅଜ ଏଥି ତଳ !
ଜନ୍ମଭୂମି ? ସ୍ୱର୍ଗୁଁ ଶ୍ରେଷ୍ଠ ? ନୁହେଁ କଳପନା ।
ଯହିଁ ମୈତ୍ରୀ ନାମେ ସତ୍ୟ-ସମାଧି ରଚନା,
ସେ ମୋର ଜନମ ଭୂମି ? ପଶୁ ଲୀଳାସ୍ଥଳୀ !
ଲୋଡ଼ା ତହିଁ ବଳବନ୍ତ ପୌରୁଷର ବଳି ।
ଦେବ ଯେବେ ମୁକ୍ତ ରାଜା ମନେ ମୋର କଲେ,
ପ୍ରଣମି ଏ ଦେଶେ ନମି ବିଶ୍ୱସ୍ରଷ୍ଟା ପଦେ,
ଖୋଜିବି ଆପଣା ଭୂମି ବିସ୍ତୀର୍ଣ୍ଣ ପ୍ରବାସେ,
ନ ମରଇ ଯହିଁ ପ୍ରାଣୀ ସତ୍ୟ ଉପବାସେ ।
ମାନବ ନୁହଇ ଯହିଁ ନର-ଭାଗ୍ୟ-ଦାତା,
ଶୂନ୍ୟ ସ୍ୱେଚ୍ଛାଗ୍ରହ, ସେ ମୋ ଜନ୍ମ ଭୂମିମାତା !
ଏସନେ ଉତ୍ତରୁ ରୁଦ୍ଧ ସ୍ଥବିର ଅମାତ୍ୟ—
ପ୍ରଜ୍ୱଳିତ ରୋଷାନଳେ ଦୀପ୍ତ ରାଜଗାଦି ।
ଶେଷେ ହେଲା ଦଣ୍ଡାଦେଶ !..........
"ରଖ ଦିନ ସାତ—
ଅନଶନେ କାରାଗୃହେ ! ସକଳ ଅଜ୍ଞାତ !

ଅଷ୍ଟମ ଦିବସେ ବନ୍ଧି କରି ଚକ୍ଷୁ, କର,
ନଗରେ ବସାଇ ନେବ ଗର୍ଦ୍ଦଭ ଉପର।
ରାଜ୍ୟ ଉଚ୍ଛୁଳିବ ହାସେ କରତାଳି ଶବ୍ଦେ
ଛାଡ଼ିବ ଏକାକୀ ଶେଷେ ଘନ ବନ ମଧ୍ୟେ।"
ଦରବାରେ ହେଲା ଘନ କରତାଳି ବୃଷ୍ଟି,
ଶୁଭେ "ସାଧୁ, ସାଧୁ!" ରବ। ବୃଦ୍ଧ ବନ୍ଧଦୃଷ୍ଟି—
ନତଭାଗ୍ୟ ବିଧାତାରେ କହେ ନମ୍ରସ୍ୱରେ,
"ଧନ୍ୟ ହେଲି! ଭୋଗ ରାଜ୍ୟ ମହା ଆନନ୍ଦରେ।"



## ରିକ୍ସାବାଲା

ଖଟି ଖଟି ଦିନମାନ ଗର୍ଦ୍ଦଭ ସମାନ,
ରକ୍ତ ପିଣ୍ଡଗୋଟା ଉଡ଼ିଗଲାଣି ବା ପ୍ରାଣ।
ଧନିକ ଅଳିନ୍ଦେ ବସେ ବରଷାକୁ ଡରି,
ଦେଖି ଲାଗେ ଶ୍ମଶାନର ପ୍ରେତ ଆତ୍ମା ପରି।
ଡୁହାଇ ଡୁହାଇ ବା ଆପଣି ଆସେ ମାଡ଼ି,
ପଥ ପାର୍ଶ୍ୱେ ଧୂଳି ଧୂସରିତ ରିକ୍ସା ଗାଡ଼ି।
ଆସଇ ବରଷା ଯେହ୍ନେ ଜନନୀ କଲ୍ୟାଣୀ,
ଉଲ୍ଲସି ଉଠଇ ବସୁନ୍ଧରା ଦଗ୍ଧ ପ୍ରାଣୀ।
ଶୀତଳ ପବନ ଯେହ୍ନେ ପ୍ରେୟସୀ ନିଶ୍ୱାସ,
ଉଷାର ମଦିର ସ୍ୱପ୍ନ ହରେ ଶତ ତ୍ରାସ।
ପ୍ରଥମ ଆସାର ସିକ୍ତ ସ୍ନିଗ୍ଧ କ୍ଷିତିଗନ୍ଧ,
ବହି ଆଣେ ନିଃସ୍ୱପ୍ରାଣେ କି ଆଶା ଆନନ୍ଦ!

ଭୁଲ୍‌ଇ ସେ କ୍ଷଣେ କ୍ଳାନ୍ତ ଭୁଲେ ଆତ୍ମସତ୍ତା,
ସ୍ୱଚ୍ଛ ଆକାଶକୁ ଜାଗେ ସୁଦୂର ମମତା ।
ଆଜି ସେ ନୁହଇ ନିଃସ୍ୱ, ନୁହେ ସେ ଏକାକୀ,
"ନୁହେଁ ଭରବାହୀ ପଶୁ" ପ୍ରାଣଉଠେ ଡାକି;—
ମନେପଡ଼େ ପୁଣି ତାର ନଦୀ ଆରପାରେ
ତା ପିଲାଏ ପଥ ଚାହିଁଥିବେ ଅନ୍ଧକାରେ ।
କେସନେ ବା ଯିବ ଫେରି ? ଭାଳେ ମନଦୁଃଖେ—
ରୁଗ୍‌ଣା ତା ଘରଣୀ ବେନି ଶାବକଙ୍କ ମୁଖେ—
ଥିବ କିବା ଗୁଣ୍ଡି ? ଦେଇନାହିଁ କିଛି କଣି,
ମନ୍ଦ କପାଳକୁ ଆଜିମାନ ଅଣାଉନି—
ପଡ଼ିଛି ତା ଭାଗେ, ମାଲିକର ପାଞ୍ଚଅଣା,
ଗାଡ଼ିର ବାହୁଲ୍ୟ ଦନ୍ତଦାନ ବୁଝିବଣା ।
ତା ଭାବନା ଦେଖି ହସି ଉଠେ ସମୀରଣ,
ବାର୍ଦ୍ଧକ୍ୟ-ମୃତ୍ୟୁରେ ଯଥା ତୁଚ୍ଛେ ସଞ୍ଜୀବନ ।
ଏକାଳେ ଧନିକ ଗୃହ ମଧ୍ୟୁ ଆସେ ଦାସୀ,
ବାକ୍ୟବାଣେ ଭାଜି ପଡେ ଅବା ମେଘ ରାଶି ।
ବଜ୍ର କଡ଼ମଡ଼ସମ ହୁଙ୍କାରି ହକାରେ
"କିଏରେ ବସିଛୁ ଭୂତ କିବା ଅଧିକାରେ ?
ଯା' ଯା', କୋଡ଼ି, ପଙ୍କ୍ ଭାଷେ ଧନିକ ଗୃହିଣୀ—
"ଛଡ଼, ତଡ଼, ରୋଗୀ ଅବା ପଙ୍ଗୁ ନାହିଁ ଜାଣି ।"
"ଯାଅ ଉଠି ନିଉଛୁଣା ।" ଗର୍ଜେ ପୁଣି ଦାସୀ;
ଗୃହ ସ୍ୱାମୀ କହୁଛନ୍ତି, "ଚୋରଟାଏ ଆସି—
ବସିଅଛି କାହିଁ, ଦିଅ ଥାନାକୁ ପଠାଇ ।"
ଭୃତ୍ୟ ଆସି ଉଚେ କହେ, 'କାହିଁ ପାଜି କାହିଁ ?'

ଉଠିଯାଏ ଶ୍ରମକ୍ଲାନ୍ତ ଦୀର୍ଘ ଉଷ୍ଣଶ୍ୱାସେ,
ସ୍ୱପ୍ନ କାହିଁ ଯାଏ ଭାସି ! ପଶ୍ଚାନ୍ତ ହତାଶେ—
ଗୁହାଁ ସୌଧଶୀର୍ଷେ, ଗୁଲେ ପୁଣି ରିକ୍‌ସା ଧରି,
ଗୁଣି ଭାର-ଚାହା-ପଣ ଭାଗ୍ୟକୁ ଅଦରି ।

[୧୯୩୭]

---

## ଗର୍କି*

୧—ଶବଦଗ୍ଧ କଲ ମୃତ୍ୟୁ ମାଂସ ଅସ୍ଥିଚୟ,
ମାତର ପୋଡଛି କାହିଁ ରକ୍ତାକ୍ତ ହୃଦୟ ?
ସେହି କୁଣ-ବଦ୍ଧ ହାୟା ବୁଭୁକ୍ଷୁ ନୟନ,
ବାଷତ ଲଲାଟ ଶାନ୍ତ କରୁଣ ଲପନ
ଭସ୍ମ ଶେଷଁ ଉଠେ ଜାଇ ! ଦ୍ୱିଗୁଣ ଉଜ୍ଜ୍ୱଳ !
ପ୍ରଳୟପୟୋଧି ଜତ୍ତ ଜୀବନ କମଳ ।
ସେ ଶର ବୁଭୁକ୍ଷୁ ଅସ୍ମାଶୋଷିତ ଜର୍ଜର
ଯେସନେ ପରମ ସତ୍ୟ ଅକ୍ଷୁଣ୍ଣ ଅମର ।
ଦେଖିଛି ସେ ଥରେ ମୁଖ ଶୁଣିଛି ସେ ବ୍ୟଥା,
କୋଟି ନିପୀଡ଼ିତ ସିନ୍ଧୁ ସଂଗ୍ରାମ ବାରତା,
ପରଶେ ଯିବ କି କେବେ ମୃତ୍ୟୁ ବ୍ୟବଧାନ ?
ପଢ଼ୁଛି ଏ ଯାହା ଶେଷେ ଅମୃତ-ସନ୍ତାନ ।
ପରମ ନିର୍ଭୀକ ଶୁଣି ସତ୍ୟ ଦୈବ ବାଣୀ,
ନୈରାଶ୍ୟ-ସାଗରେ ତଥ୍ୟ ଗୁଲଛି ଉଡାଣି ।

* ରୁଷ୍ ଦେଶର ସ୍ୱନାମଧନ୍ୟ ସାହିତ୍ୟିକ ।

୨— ଅନଳ ସ୍ଫୁଲିଙ୍ଗ ଅମ୍ଭା ହେଉ ଅତି ତୁଚ୍ଛ
ନିଷ୍ପେଷଣ ସିନ୍ଧୁ ମଧ୍ୟେ ଟିଙ୍କଶୃଙ୍ଗ ଜଢ ।
ଗରଳ ସିନ୍ଧୁରୁ ଆଣେ ଅମୃତକୁ ଛାଣି,
କେ ଭରବ ଭସ୍ମ ସତ୍ୟ ଜ୍ୱାଳାମୟୀ ବାଣୀ ?
ହେଲାତ ବୁଦ୍‌ବୁଦ ସମ ଜୀବନ ସାଗରେ,
ଜାଗି ଜଳ ଶମନୁନ ପର୍ବତ ପ୍ରଭାତେ ।
ମରଛି ସକଳ ସୃଷ୍ଟି ସବୁ ଅନାସ୍ଥିର,
ସତ୍ୟ ନିଷ୍ପେଷଣେ ସଦା ସ୍ୱପନ ଅସାର ।
ଜୀବନଜାହ୍ନବୀ ଅଗ୍ରେ ଅଣିଲ ହୁଙ୍କାର,
ମରଣ ବିସ୍ମୃତ ସେକୁଁ ହୃଦରନ୍ଧ୍ର ଢାଳ ।
ଲକ୍ଷ କୋଟି ନିଃସ୍ୱ ମୁଖେ ଫୁଟାଇଛ ହାସ,
ଊଷର ଭୂମିରେ ପୁଣି ପ୍ରାଣ ପରକାଶ !
ହେ ନିଃସ୍ୱ ବୁଭୁକ୍ଷୁ ବନ୍ଧୁ ! ବିଦାୟ ସମ୍ଭାର,
ନ ଜାଣେ କି ଦେବ ନିଅ ଅଶ୍ରୁ ନମସ୍କାର ।

[୧୯୩୨]

---

## ଭିକ୍ଷୁଗୀତ—

—୧—

ତରଙ୍ଗେ ସେ ତରଙ୍ଗ ରଙ୍ଗେ
ଜୀବନ ଫାନ୍ଦେ ନ ଦଏ ଧରା,
ଅଭିମାନ ଗରବ ଜାଣେ
ପଛୁ ଫେରି କରେ ଠାପରା ।
ତା ଇଙ୍ଗିତେ ହସଇ ଫୁଲ,
ଊଷାଲୋକ ନିତି ଅକୂଳ,
ସମୀରଣ ବିଞ୍ଚଯ଼ ବାଣୀ
ଦିବା ରାତି ଘୋଷଇ ପରା ।। ୧ ।

ବ୍ୟଥା ଅଶ୍ରୁ ଦୁଃଖ ଅରତେ,
କହ୍ନ କବା ଯାଏ ସ୍ତୁପଟେ,
ପଗ୍ଣର ଶୋଣିତ ଦାନେ
କେତେ ଜନ ଶୋକ ପସଗ୍ ।। ୨।

ସରସୀରେ ଢେରନ୍ତି ଦଳ,
ସାତ ତଳ୍କୁ ଫୁଟେ କମଳ,
ନ ଦଣିଲେ ମୃଣାଳ ଜଳ
ଭେକା ହଂସ ଫେରେ କ ଭଲ ? । ୩ ।

ବୁଡ଼ିଲେଟର ସାଗର ନୀରେ,
ମାଣିକ୍ୟର ସନ୍ଧାନ ମିଳେ,
ସମ୍ଭବ କ କନାରେ ବୁଲି
ମୃତ୍ୟୁ ତମ୍ଭେ ଜୀବନ ଖଗ୍ ? ୪ ।

ଏ ମରତ ବିଷମ ବାଜି,
କେତେ ଅଳ ରହବୁ ମଜି ?
ବୁଡ଼ଯା ତୁ ସାଗର ନୀରେ
ହସେ ପଛେ ମରଣ ଇଗ୍ । ୫ ।

ତୋ ପରାଣ ନିଗମ ସ୍ରୁରେ,
କବା ଧ୍ୱନି ସ୍ଫୁରେ ମଧୁରେ,
ସବୁ ଶୂନ୍ୟ କଠଇ ଭର
କଏଁ ତମେ ତପନ ତଗ୍ ।। ୬ ।

---

୨—ନଶବଦ ଶାରଦ ପ୍ରାତେ
ଅତଥି କେ ଗଲ୍‌ଟରେ ଗାଇ !
ବଣି ତୋର ଅନଳ ଖେଳ
ଫେଉ ଥରେ ଗ୍ଳହିଁଲ୍ ନାହିଁ ।

—୨୫୪

ଶୁଣି ତାର କରୁଣ ଭାଷା
ଫୁଲେ ଫୁଲେ ଖେଳିଲା ଆଶା;
ଥିର ହେଲା ବଉଦ ଭେଳା
ଥିର ଉଷା ରହିଲା ଚାହିଁ ।
ଫେର ଥରେ ଚାହିଁଲୁ ନାହିଁ ?୧।

ସରଣି ତୋ ଦେଉଳ ତୋଳା,
କବା ଲାଗି ତୁ ଶର ଭୋଳା—
ଭରମୁ ସାଗର ବେଳାରେ
କି ଭାବନା କଲରେ ବାଉ ?
ଫେର ଥରେ ଚାହିଁଲୁ ନାହିଁ ।୨।

ଦୂର ପଥ ତୁ ବଇରାଗୀ,
କେତେ ଦାଗେ ହେଲୁରେ ଦାଗି,
ଅକୁଳେ ସେ ମାଣିକ୍ୟ ଖୋଜୁ
ଏଥି ସେବା ମିଳଇ କାହିଁ ?
ଫେର ଥରେ ଚାହିଁଲୁ ନାହିଁ ?୩।

ଦାନ୍ତୁ ଦାନ ଯାଏ ରେ ବନ୍ଧୁ,
ଦୀନତା ତୋ ନୁହଇ କହୁ,
ନାବ ତୋର ଦଅ ତୁ ମେଲ
ଭବ ନଦୀ ସଙ୍କେତ ପାଇ ।
ଫେର ଥରେ ଚାହିଁଲୁ ନାହିଁ ? ୪ ।

ଟେସ ସେ ଦୀପ ରଖିଛୁ ଜାଳି,
ସଯତନେ ତଇଳ ଢାଳି,
ନାଭିବରେ ଅଟରେ ଚାହିଁ
କ୍ଷୀଣ ତେଜ ଯିବ ମିଳାଇ ।
ଫେର ଥରେ ଚାହିଁଲୁ ନାହିଁ ? ୫ ।



[ ୧୯୩୭ ]

## ରୂପ ପରିଚୟ

ହେବାରୁ ସେ ରୂପପଦ୍ମ ବିଶ୍ୱେ ପରକାଶ,
ମଙ୍ଗଳର ଆଶୀର୍ବାଦ ଅନ୍ତରେ ବିଶ୍ୱାସ ।
ଜୀବନ ଅମୃତ କଣା ରହୁଛି ବା ଲାଗି
ସକଳ ପ୍ରାଣୀର ପ୍ରାଣ ନୋହି ଯାଏ ସାଙ୍ଗି !
ବିଶାଳ ସାଗରେ କ୍ଷୀଣ ବିନ୍ଦୁ କ୍ଷଣିକର
ମାତର ଅବ୍ୟକ୍ତ ରୂପ ଅପୂର୍ବ ସୁନ୍ଦର !
ରୂପ ପୁଣ୍ୟପ୍ରଭା ବଳେ ପ୍ରାଣ ଲଭେ ଗତି,
ଶିବ ସୃଷ୍ଟି ଉଦ୍ଦେଶ୍ୟେ ମୁଁ ଢାଳଇଁ ପ୍ରଣତି !
କ୍ଷଣିକର ପୁଷ୍ପ ତୁମେ ? କ୍ଷଣିକ ସୌରଭ ?
ମାତର ନୁହଇ ଭୁଲ ଅମୃତ ଗରବ ।
ଅମୃତ ପ୍ରମାଣୀ ତୁମେ, ତୁମରି ଇଙ୍ଗିତ
ସହଜ କରଇ ପ୍ରାଣେ ପରମ ଅସ୍ତିତ୍ୱ ।
ରୂପରାଣି ! ଘେନ ମୋର ପ୍ରଣତ ବିନୟ,
ରୂପ ସଙ୍ଗେ ଆଜ ଲଭ୍ୟ ଆତ୍ମ-ପରିଚୟ !

••○••

## * ବନ୍ଦୀ ଅପର୍ଣ୍ଣା

୧—ଦରିଦ୍ର ଦେଶର ଶିଳ୍ପୀ ଦୃଷ୍ଟି ଅନ୍ତରାଳେ,
ଜନମି ମୃଦୁଳ ଅଙ୍ଗ ଲେଖା ଥିଲା ଭାଲେ ।
ଲେଖିଲା ବା ନାହିଁ କାଳ ଅମର ଅକ୍ଷରେ,
ତୁମ କୀର୍ତ୍ତି ଗାଥା, କେହି ନ ପୁଛୁଛବେ ଥରେ ।

* ପାଇଲାର ସ୍ୱର୍ଗତ ଅନ୍ଧଗାୟକ ।

ନ କରବେ ତୁମେ ସାକ୍ଷୀ ଅଙ୍ଗୁଳି ନିର୍ଦ୍ଦେଶ,
ତୁମର ସମାଧି ଗୃହଁ ବସ୍ତୁ ଅବଶେଷ ।
କ୍ଷଣିକ ମୂର୍ଚ୍ଛନା ତୁମେ, ପାର ନ ସମଜି
ଜୀବନ ରହସ୍ୟ, ଯୌବନେ ଶୂନ୍ୟେ ଗଲ ହଜି ।
ଲଭ ହାନି ସେ ଜୀବନେ କରବା ଗଣନା—
କିବା ଫଳ ? ଉଠିଲି ମୋତେ ପଡ଼ୁନାହିଁ ଜଣା ।
ନୀରବେ କହନ୍ତି ନିଃସ୍ୱ ନିଭୃତ ଗୋପନେ,
ମାତର ଏକଇ କଥା ନିବେ ନାହିଁ ମନେ,—
ଅଙ୍କାରେ ଅଲେଖ ଅଭ୍ର ଅମୃତ ଏ ପ୍ରାଣି
ସୁଲଭ ଅନନ୍ଦେ ତହିଁ ପରମ ପ୍ରମାଣ !

୨—କାନନ-ମଲ୍ଲିକା ଅବା ଶ୍ମଶାନ-ତୁଳସୀ,
କାବ୍ୟ-କୁଞ୍ଜେ କବିକୁଳ କଳ୍ପି ଥାନ୍ତୁ ବସି,
ମୋ ନୟନେ-ମୋ କଳ୍ପନା ନୋହୁ ପଛେ ଘେନା,—
ରୁଧିର ଅପ୍ଳୁତ ଅସ୍ଥି ଭଗ୍ନଜାନୁ ସେନା !
ଯୁଝିଛନ୍ତି ଅକ୍ଳାନ୍ତ ପ୍ରାଣେ, ଲଭିନାହିଁ ଖ୍ୟାତି,
ଲକ୍ଷ ନିପୀଡ଼ନେ ଅରେ ଦମିନାହିଁ ଛାତି ।
ନିଷ୍ପେଷଣ ବ୍ୟଥା ଯତ ସେ ବୀଣା ଝଙ୍କାରେ,
ହୋଇଛନ୍ତି ସୁନ୍ଦର ଇନ୍ଦ୍ରଧନୁ ପରକାରେ ।
ଦୈନ୍ୟ ବର କଲ ତାକୁ ଗୌରବମଣ୍ଡିତ
ସୁନ୍ଦର ପରଶେ ତବ କାଳିମା କୁଣ୍ଠିତ ।
ନିଃସ୍ୱ ବନ୍ଦୀ, ଧନ୍ୟ ତୁମେ ରାଜ ଦରବାରେ !
ଗାଇ ରାଜ ପ୍ରଶସ୍ତି ସେ ଜୀର୍ଣ୍ଣ ବୀଣା ତାରେ ।
କି ଭୟ ଭାବନା ? ସୁଖେ ମୁଦ ହେ ନୟନ,
ଧନ ମାନ ଖ୍ୟାତି ଦେଖ ଅପଣା ସ୍ୱପନ ।

୩—ଦାରିଦ୍ର୍ୟ ଅଶ୍ରୁରେ ବନ୍ଦୀ ତବ ଅଭିଷେକ
କ୍ଷୁଣ୍ଣ କରି ନାହିଁ ମାନ ତବ ରାଜ୍ଞ ଟେକ ।
ଅପୂର୍ବ ମୂର୍ଚ୍ଛନା ତାନ ସେହି ଜୀର୍ଣ୍ଣ ତାରେ
କୌମୁଦୀଵିହାର ପ୍ରାଣ-ଅଶ୍ରୁପାରାବାରେ ।
ନୀରବେ ବହୁଛ ଶିରେ ପୂର୍ଣ୍ଣ ରାଜାଦେଶ
ଚନ୍ଦ୍ରବୃନ୍ଦାବନେ ନିତ୍ୟ ମାଧୁର୍ଯ୍ୟ ଆବେଶ;
ସେହି ତବ ପୁରସ୍କାର ଜୀବନ ଅନ୍ଧାରେ,
ନୋହୁ ତବ ମୂଲ୍ୟ ଦେନା ମର୍ତ୍ତ୍ୟଦରବାରେ ।
ଧନ୍ୟ ସେହି ଦେଶ ମାଟି ଯାର ଅଧିବାସୀ—
ମରେ ନାହିଁ କେବେ ହୋଇ ଅନ୍ନ ଉପବାସୀ;
ସେ ଦେଶେ ଦାରିଦ୍ର୍ୟ ଦୀକ୍ଷା ପରମ ପ୍ରମାଣ,
ଯହିଁ ନିତ୍ୟ ଲଭେ ନିଃସ୍ୱ ରାଜାର ସମ୍ମାନ,
ସେ ଦେଶେ ନମସ୍ୟ ତୁମେ । ତବ ଅବସାନ
ଅଶ୍ରୁ-ଅନ୍ଧକାରେ ଆଣେ ଆଲୋକ ସନ୍ଧାନ ।

[ ୧୯୩୭ ]

---

## ଦେଶସେବା

୧—ଦେଶସେବା ନାମେ ଅମ୍ଳପ୍ରତିଷ୍ଠା ପ୍ରସ୍ତର,
କୁହାଇ କ ପୌରୁଷର ଘୃଣ୍ୟ ବ୍ୟଭିଚାର ?
ନାହିଁ କ ସମ୍ଭ୍ରମ ଲଜ୍ଜା ନୀତି-ଭୟ ମନେ ?
ସ୍ୱାର୍ଥଚକ୍ର ସେତ ପଛେ ତହିଁ ମଧ୍ୟେ ଜଣେ—

ନୁହନ୍ତ ମାନବ କେହୁ ! ମୂକ ପଶୁ ସମ
ସରଳ ବିଶ୍ୱାସ ନିଷ୍ଠା ଏକାନ୍ତ ଧରମ ।
ଅଛୁ ନା ସାହସ ବୀର୍ଯ୍ୟ ମାନବ-ନାୟକ,
ତାଙ୍କର ଗୁଳକ ହେବ, ତାଙ୍କରି ସେବକ ?
କରିବଟି ପ୍ରାଣପାତ ତାଙ୍କରି ସେବାରେ ?
ଦେବନା ଶୋଣିତ ପିଣ୍ଡ ଦୁର୍ଦ୍ଦିନ ଅନ୍ଧାରେ ?
ଅଛୁ ବା ଯୋଗ୍ୟତା ମନେ କରିଅଛ ପୁଚ୍ଛା ?
ଅବା କ୍ରୀଡ଼ା ଶେଷେ ଆତ୍ମରକ୍ଷା ପନ୍ଥା ଖୋଜା ?
ଭୁଲନା ଅଜ୍ଞାନ-ଦଣ୍ଡ-ବନ୍ଧନ-ବିଧାନ !
ସହସ୍ର ହେଲେତ ପ୍ରାଣେ ସୁପ୍ତ ଭଗବାନ ।
୨—ଅନ୍ଧକାର ଯାତ୍ରୀ ଯେବା ଜାଣିନାହିଁ ଗୁଳ,
ପଦେ ପଦେ ଝୁଣ୍ଟିବାର ଲୋକହସା ଖାଲ !
ଅଜ୍ଞାନର ଦର୍ପେ ଯେବା କାଟିଛୁ ଜୀବନ,
ଆତ୍ମଘାତୀ ହୋଇ ଆନେ କରଇ ବିପନ୍ନ ।
ଯାଇନି ଶୈଶବ ଯାର ହାତେ କ୍ରୀଡ଼ନକ,
ଧୃଷ୍ଟତା ନୁହେ କି ହେବା ଆନର ଗୁଳକ ?
ବିଷମ ମାୟାରେ ଯାର ଚକ୍ଷୁ ବିଭ୍ରମିତ,
ଦୂର ସିନ୍ଧୁରୋଳ ଶୁଣି ମୁଗ୍ଧ ପୁଲକିତ,
କାହୁଁ ସେ ଜାଣିବ ପାଶେ ନାଗପାଶ କଥା ?
ବାସ୍ତବ-ସମ୍ପର୍କ ଶୂନ୍ୟ ଜୀବନର ବ୍ୟଥା ?
ବିପନ୍ନ କାତର ବନ୍ଧୁ ଜୀବନ ନିୟନ୍ତା,
ଦୁର୍ଗମ ଅନ୍ଧାର ପଥେ ଶୁଦ୍ଧ ତୁମ କଥା ।
ନିଃସ୍ୱ ଏ କାତର କର ଧରି ଭଗବାନ,
ବିପଥ ଗମନୁଁ ତୁମେ କର ପରିତ୍ରାଣ ।



# ସ୍ମୃତିପରିହାସ

ପ୍ରସ୍ଫୁଟିତ ଉପବନେ ନାନାଜାତି ଫୁଲ,
ଉଦ୍‌ବେଳିତ ପ୍ରାଣ ପାନରସ-ସମାକୁଳ ।
ଅଥବା ତାରୁଣ୍ୟ ହାସ ଜୀବନ ପ୍ରବାହ,
ପ୍ରଶାନ୍ତ ଆନନ୍ଦ ପ୍ରଭା ନାହିଁ ଗାନଦାହ ।
ମୁଗ୍ଧ ନୟନେ ରହୁଁ ବସି ନୟନ ବେନି ସିକ୍ତ,
ଭାବିଲେଁ ଅତୀତର ସ୍ୱପ୍ନ ! ଅଜ୍ଞ ମୁହିଁ ରିକ୍ତ !
ମନେପଡ଼େ ଦିବ୍ୟ କାନ୍ତି କୁସୁମ ଭୂଷିତ—
ପରିପୂର୍ଣ୍ଣ ପ୍ରାଣରସେ ତ୍ରଣେୟ ହସିତ !
ଜୀବନ୍ତ କୁସୁମ ସମ ସୁନ୍ଦର ସମ୍ପୂର୍ଣ୍ଣ,
କାଳର ଶୀତଳ ସ୍ପର୍ଶେ ଅଜ୍ଞ ସାହା ଚୂର୍ଣ୍ଣ ।
ସକଳ ମାଧୁର୍ଯ୍ୟ ରସ ସକଳ ନବୀନ,
କେମନେ କରଇ କାଳ ଅକାଳେ ମଳିନ,
ଭାବୁଥିଲି ବସି ବସି ! ଷଣେ ରୁଗ୍ଣ ପ୍ରିୟା—
କ୍ଷୀଣ ଡାକେ, "ଔଷଧଟା ହେଲନାହିଁ ଦିଅ;
ବେଳ ଯେ ଯାଉଛି ଗଡ଼ି, ନ ପାରଇଁ ଚାଲି,
ହାୟ ମନ ବୁଝି ! ଜୀଇଁଥାଉ ସା ନ ମଲି ।
କେଉଁ ଆଡ଼େ ଗଲି ଅବା ?" ଉଠିଲି ଚମକି—
ଅପରାଧୀ ସମ ଗଲି କଳ୍ପନା ଅଟକି ।
କହିଲି, "ସାଇନି ଚାହିଁ ଦେଖୁଥିଲି ବସି,
ଫୁଟିଅଛି ଫୁଲ ଯେତେକ ସହସ୍ର ରୂପସୀ—
ବୃନ୍ତବନ୍ତ ସ୍ୱପ୍ନ ଜାଲ !" କହେ ଶୁଷ୍କ ହାସେ—
"ଦେଖିନ ମରଣ ତାର ହସୁଥିଲା ପାଶେ ?

ଦେଖିନାହିଁ, ଯେବେ ଦେଖି ଅସ ଅନ୍ତଥରେ,
ସନ୍ଧିତ ଔଷଧ ଶିଶି କ୍ଷୁର କାଳ ଡରେ ।''
ପ୍ରିୟା ପରିହାସେ ଅଶ୍ରୁ ସିକ୍ତ ଉଠେ ଫୁଲି,
ସୁହେଁ ମୁଗ୍ଧ ନେବେ କରୁଁ ଖସିପଡେ
ଶିଶିରୁ ଔଷଧ ଢାଲେ, ଝଁରଇ ଲୋତକ,
ହସି ଉଠେ ଯେହ୍ନେ ମୃତ୍ୟୁ ସୃଷ୍ଟି ନିୟାମକ !
ଭାବିଲି ମୋ କୁସୁମ କଥା ! ପାରିବନା ଧରି—
ମରଣ ସେ ଫୁଲ୍ ଦେଲା ଅଭିନବ କରି ?
ହସି ପୁଣି କହେ ପ୍ରିୟା "ସେହି ଭାଗ୍ୟବାନ ।
ମୃତ୍ୟୁ ଅଶ୍ରୁ ଅନ୍ଧକାରେ ଲଭେ ସେ ପରାଣ !"

[୧୯୩୭] 

## ଦଣ୍ଡବିଧାନ

ନିର୍ବୋଧ ଶିଶୁରେ କରି ନିଷ୍ଠୁର ପ୍ରହାର,
ଅଶ୍ରୁ ଧାର ହେଲା ମୋର ହୃଦ ରକ୍ତାଗାର !
ଯେଣିକି ଚାହିଁଲେ ଦଣେ ବିଷଣ୍ଣ ବଦନ
କାତର ନୟନଭଙ୍ଗୀ, ରୁଦ୍ଧ ତା କ୍ରନ୍ଦନ !
ପଦ୍ମପତ୍ର ଅନ୍ତରର ପାରିନାହିଁ କହି
ନୀରବେ ମୋ ଅତ୍ୟାଚାର ନେଲା ଟେକି ବହି,
ତାର କ୍ଷୁଦ୍ର ଶିରେ, ଥରୁଥିଲା କ୍ଷୀଣ ଗାଏ !
ଅହତ ନୟନ ତାର ଢଳେ ମୋ ଶେଳାଘାତ—
ମୋ ସର୍ବାଙ୍ଗେ ! ଧୂର୍ତ ଭୁଲ ହେଉନାହିଁ ଅବ
ବିବେକ ବନ୍ଧୁର ବୁଦ୍ଧି ଯୁକ୍ତି ଲଜ୍ଜାଭରେ !

# ସ୍ମୃତିପରିହାସ

ପ୍ରସ୍ଫୁଟିତ ଉପବନେ ନାନାଜାତି ଫୁଲ,
ଉଦ୍‌ବେଳିତ ପ୍ରାଣ ପାନରସ-ସମାକୁଳ ।
ଅଥବା ତାରୁଣ୍ୟ ହାସ ଜୀବନ ପ୍ରବାହ,
ପ୍ରଶାନ୍ତ ଆନନ୍ଦ ପ୍ରଭା ନାହିଁ ଗାନଦାହ ।
ମୁଗ୍ଧ ନେନେ ରହୁଁ ବସି ନେଇ ବେନି ସିକ୍ତ,
ଭାବେଁ ଅତୀତର ସ୍ୱପ୍ନ ! ଆଜ ମୁହିଁ ରିକ୍ତ ।
ମନେପଡ଼େ ଦିବ୍ୟ କାନ୍ତି କୁସୁମ ଭୂଷିତ—
ପରିପୂର୍ଣ୍ଣ ପ୍ରାଣରସେ ତ୍ରଣ୍ୟ ହସିତ !
ଜୀବନ୍ତ କୁସୁମ ସମ ସୁନ୍ଦର ସମ୍ପୂର୍ଣ୍ଣ,
କାଳର ଶୀତଳ ସ୍ପର୍ଶେ ଆଜ ଯାହା ଜୀର୍ଣ୍ଣ ।
ସକଳ ମାଧୁର୍ଯ୍ୟ ରସ ସକଳ ନବୀନ,
କେସନେ କରଇ କାଳ ଅକାଳେ ମଳିନ,
ଭାବୁଥିଲି ବସି ବସି ! ଯଣେ ରୁଗ୍‌ଣ ପ୍ରିୟା—
କ୍ଷୀଣ ଡାକେ, "ଔଷଧଟା ହେଲନାହିଁ ଦିଅ;
ବେଳ ଯେ ଯାଉଛି ଗଡ଼ି, ନ ପାରଇଁ ଚାଲି,
ହାୟ ମନ୍ଦ ବୁଦ୍ଧି ! ଜୀଇଁଥାଉ ଯା ନ ମଲି ।
କେଉଁ ଅଡ଼େ ଗଲ ଅବା ?" ଉଠିଲି ଚମକି—
ଅପରାଧୀ ସମ ଗଲି କଳ୍ପନା ଅଟକି ।
କହିଲି, "ଯାଇନି ତାହିଁ ଦେଖୁଥିଲି ବସି,
ଫୁଟିଅଛି ଫୁଲ ଯେତେକ ସହସ୍ର ରୂପସୀ—
ବୃନ୍ତବନ୍ତ ସ୍ୱପ୍ନ ଜାଲ !" କହେ କ୍ଷୁବ୍ଧ ହାସେ—
"ଦେଖିନ ମରଣ ତାର ହସୁଥିଲା ପାଶେ ?

ଦେଖିନାହିଁ, ଯେବେ ଦେଖି ଆସ ଅଭ୍ୟନ୍ତରେ,
ସଞ୍ଚିତ ଔଷଧ ଶିଶି କେତେ କାଳ ତଳେ ।"
ପ୍ରିୟା ପରିହାସେ ଅଶ୍ରୁ ସିକ୍ତ ଉଠେ ଫୁଲ,
ସ୍ନେହେ ମୁଗ୍ଧ ନେବେ କରୁଁ ଖସିପଡେ
ଶିଶିରୁ ଔଷଧ ଢାଳେ, ଝରଇ ଲୋତକ,
ହସି ଉଠେ ଯେହ୍ନେ ମୃତ୍ୟୁ ସୃଷ୍ଟି ନିୟାମକ !
ଭାବିଲି ମୋ କୁସୁମ କଥା ! ପାରିବନା ଧରି—
ମରଣ ସେ ଫୁଲ ଦେଲା ଅଭିନବ କରି ?
ହସି ପୁଣି କହେ ପ୍ରିୟା "ସେହି ଭାଗ୍ୟବାନ ।
ମୃତ୍ୟୁ ଅଶ୍ରୁ ଅନ୍ଧକାରେ ଲଭେ ସେ ପରାଣ !"

[୧୯୩୬]



## ଦଣ୍ଡବିଧାନ

ନିର୍ବୋଧ ଶିଶୁରେ କରି ନିଷ୍ଠୁର ପ୍ରହାର,
ଅଶ୍ରୁ ତାର ହେଲା ମୋର ହୃଦ ରକ୍ତଧାର !
ଯେଣିକି ଚାହିଁଲେ ଦିଶେ ବିଷଣ୍ଣ ବଦନ
କାତର ନୟନଭଙ୍ଗୀ, ରୁଦ୍ଧ ତା କନ୍ଦନ !
ପଦେପଦେ ଅବାଧ୍ୟର ପାଉନାହିଁ କହି
ନୀରବେ ମୋ ଅତ୍ୟାଚାର ନେଲା ତେଣୁ ବହି,
ତାର କ୍ଷୁଦ୍ର ଶିରେ, ଥରୁଥିଲା କ୍ଷୀଣ ଗାତ୍ର !
ଆହତ ନୟନ ତାର କହେ ଶୋକାଘାତ—
ମୋ ସର୍ବାଙ୍ଗେ ! ଧୂର୍ତ୍ତ ଭୁଲି ହେଉନାହିଁ ଥରେ;
ବିବେକ ବଜ୍ରର ଗୁର୍ଜି ସ୍ଫୂର୍ତ୍ତି ଲଜ୍ଜାଭରେ !

ସଙ୍କୀର୍ଣ୍ଣ ବିଶ୍ବର ଦମ୍ଭେ କରଇଁ ଧିକ୍କାର,
ଅସ୍ବୀକୃତ ପାପ ହୋତୁଁ କାହୁଁ ବା ଉଦ୍ଧାର ?
"ଅଜ୍ଞାନର ଭ୍ରମ ଲାଗି ସେ ଦଣ୍ଡ ବିଧାନ !
ବିବେକୀ ଦୁଷ୍କୃତ ଲାଗି କିବା ପରିଣାମ
ସ୍ଥିଳଛି କି ଥରେ ?" ପୁଚ୍ଛେ ସନ୍ତାନ ଜନନୀ,
ଦେବି କି ଉତ୍ତର ମନେ ପାରୁନାହୁଁ ଜାଣି !
ବିଶ୍ବରର ଅପରାଧ ପୀଡ଼ଇ ବିଷମ,
ହରିବ କିଏ ହେ ମର୍ତ୍ତ୍ୟେ ଅନ୍ତର ଦହନ ?
କରିଛୁ ବିଶ୍ବର ଯାର ସେ ମୋ ବିଶ୍ବରକ
ଅହତ ନୟନ ତାର ଅଯୂଧ ଫଳକ !



## ହରିଜନ !

ମଳିନ ଭୂଷଣ ପୁଣି ନୀଚକୁଳେ ଜାତ,
ମାତର ପଡ଼ଇ ମନେ ମଙ୍ଗଳ ପ୍ରଭାତ,
ଶାରଦ ଶିଶିର ସ୍ନାତ ଗୁହୁଁ ନେଇ ଠାଣି,
ଧନ୍ୟ ସିନା ସେହୁ ତୁମେ ଯାର ପ୍ରାଣରାଣୀ !
କୃଷ୍ଣାରୂପ ହୀନା କହୁ କରେ ଯେ ଫୁତ୍କାର,
ଅବମୃଷ୍ୟକାଶ୍ରି କରେ ଘୋର ଅବିଚାର—
ଆପଣାର ପ୍ରୀତି ! ଜାଣେ ନାହୁଁ ଅକାଞ୍ଚନ—
ସେ ରୂପେ ଉଜ୍ଜ୍ୱଳ ଦେବତାର ସିଂହାସନ ।
ପରମ ମଙ୍ଗଳ ସୌମ୍ୟ ଆନନ୍ଦ ସନ୍ଦେଶ
ବହୁଥାଏ ତବ ନେଇ ଦିଏ ନାହୁଁ କ୍ଳେଶ;

ମରୁଦ୍ୟାନ ସମ ପାନ୍ଥ ନେଇ ପ୍ରୀତିକର,
ଶତ କ୍ଳାନ୍ତ ହର ଶତ ପ୍ରଶାନ୍ତ ସୁନ୍ଦର ।
ବିପଥ ପଥିକ ତୀବ୍ରତମ ତୃଷା ହରି,
କହୁଦଏ ଯାତ୍ରା ପଥ ନବ ନେଇ ସୁନ୍ଦରି !

## ବିଜୟା

ଶୋଣିତ ଅପ୍ଳୁତ ଶତ ସତ୍ୟସେନା ଏ ଜାତିର ପ୍ରାଣ,
ବିଜୟ ଗୌରବେ ତବ ଘେନ ଦୀନ ମାଙ୍ଗଳିକ ଗାନ ।
ଦୀର୍ଘ ଅମା ଅବସାନେ କ୍ଷୀଣ ଉଷା ଅଲୋକ ସଞ୍ଚାର,
ସଂଗ୍ରାମ ତପତଦଗ୍ଧ ଧରା ପରେ ପ୍ରଥମ ଆସାର !
ସେ ପ୍ରଶାନ୍ତ ସନ୍ଧ୍ୟା ସମ ସୁନ୍ଦର ତୁମର ଜୟଯାତ୍ରା,
କୋଟିମୁଗ୍ଧ କଣ୍ଠ ଗାଏ "ଜୟ ହେ ଭାରତ-ଭାଗ୍ୟଧାତା !"
ପୋଛିନା ଦୁର୍ଦ୍ଦିନ ଅଶ୍ରୁ, ଏ ଜାତିର ଲଗିନା ପରଶ,
ସଂଗ୍ରାମର କ୍ଷତ ଦାହେ ! 'ପଞ୍ଚଦୁଆଁ ଦୀନ ଆଦରଣ !'
ନିଃସ୍ୱ ଏ ଜାତିର ଶତ ମର୍ମଭବ ଗ୍ଳାନ ଅତ୍ୟାଚାର,
ପକାଇ ପଛକୁ ବୀର ଶୋଣିତକୁ କରିଛ ଫୁହାର ।
ଶୁଣିଛ ଅଧ୍ୟକ୍ଷ ଡାକ, ହୃଦେ ଏ ଜାତିର ଦୈନ୍ୟ ବୋଧ,
ଭୁଲିଛ ଏକାଇ ନିଷ୍ଠା, ଅସତ୍ୟ—ଲାଞ୍ଛନା ପ୍ରତିଶୋଧ ।
ଡାକନାହିଁ ମରଣକୁ ନିର୍ଯାତନ ତବ ଗାଏ ଧୂଳି,
ଅବିଚଳ ନିଷ୍ଠା ଧୈର୍ଯ୍ୟେ ତୁମ୍ଭ ପାଦୁ ନିଷ୍ଠୁର ଶାକୋଳି !
ଦରିଦ୍ର ଜାତିର ଆଶା, ହେ ଦୁର୍ଜୟ ନୟନ ସମ୍ପଦ,
ଦିଗ୍‌ବିଜୟ ଯାତ୍ରାପଥେ ଦେଇ ନିଃସ୍ୱ-ସ୍ମରଣ-ପ୍ରଣତି ।
ଜୟ ହେଉ ଅଭିଯାନ ! ଅଗ୍ରସର, ପୁଣି ଅଗ୍ରସର !
ସୈନିକ ଜାଣେନି ମୃତ୍ୟୁ, ପୁଣି ଜୟ ! ନୁହେ ଅବସର ।

ଭେଦିଛ ଏକଇ ବ୍ୟୂହ, ଷଡ଼ବ୍ୟୂହ ଦଶଇ ସମ୍ମୁଖେ !
ଅଯୂତ ଅମ୍ଳୀୟ ମୂକ ପଣ୍ଡ ସମ ଗ୍ଲାନ୍ତ ଭସ୍ମ ଚିତ୍ତେ ।



## * ପ୍ରୀତିସ୍ୱରୂପ !

ପ୍ରୀତି ନାମେ ପ୍ରାଣ ତୁଲେ ଲଗାଇଛ ଖେଳା,
ପୀରତି ପାଳନା ନୁହେଁ ପ୍ରାଣ ଅବହେଳା ।
ପ୍ରୀତି ନୁହେ ରକ୍ତ ମାଂସ ବିଳାସର କ୍ରୀଡ଼ା,
ପ୍ରୀତି ଲତା ଅନ୍ତରାଳେ କୁସୁମର ବ୍ରୀଡ଼ା ।
କ୍ରୁସ୍ରିତ ସୁନ୍ଦର କେବା ପ୍ରୀତି ବିପଣୀରେ,
ଟଣ୍ଣୁ ଯିବ ବେଳା, ଲଭ୍ୟ ନୁହେଁ ତୃଣ ମୀରେ ।
ଭଲ ଯାକୁ ଇଚ୍ଛେ ମନ କାଳେ ହୁଏ ଭେଳ,
ଲେଉଣୀସ୍ତ ପ୍ରଦୀପଟି ନାହିଁ 'ବିନ୍ଦୁ ତେଲ,
ଆମ୍ଭ ଅବିମୃଷ୍ୟତାରେ ଗୃହ ଅନ୍ଧକାର
ଅବା ସାର ହୁଏ ପ୍ରାଣେ ସହସ୍ର ବିକାର ।
ବହିଯାଏ ବେଳା ମାତ୍ର ହୁଏ ନାହିଁ ପୂଜା,
ଚପଳ ପ୍ରଜ୍ଞାରେ କାହିଁ ଗୂଢ଼ ତତ୍ତ୍ୱ ବୁଝା ?
ଭିନ୍ନ ପ୍ରଣୟିନୀ, ପ୍ରାଣ ମାତର ଅଭିନ୍ନ,
ପ୍ରାଣେ କାହିଁ ବଡ଼ ସାନ ? ନତ ହୁଅ ଦୀନ ।
ଅରୁଚି ସେ ରୂପ ତୋର ଦେଖିଛୁ କି ଥରେ,
ସୁବର୍ଣ୍ଣ ପ୍ରଦୀପ ଅଭ୍ର ନିଭୃତ ଅନ୍ତରେ ?
ତା ଅଶ୍ରୁ ମୁକୁତା ହାର ଅମୂଲ୍ୟ ସମ୍ପଦ,
ଚିହ୍ନିବ ଗ୍ରାହକ ନୋହି ଙ୍କରୁ ଅମ୍ବବଧ ।
ପରମ ପୀରତି ଯହିଁ ସୁଲଭ ପ୍ରଣୟୀ,
କାଚ ଭାଳ ମଣି ଫିଙ୍ଗୁ ପଛେ ହେବୁ ଦହି ।

* କୌଣସି ତରୁଣ ପ୍ରଣୟୀଙ୍କ ଉଦ୍ଦେଶ୍ୟରେ ।

ପୀରତରେ ନାନ୍ଧି ଥିଲେ ଅନ୍ଧକାର ସ୍ରୋତ
ଅନ୍ଧକାର ହୋଇ ବହାଇଲୁ ଅମୃସ୍ରୋତ,
ସ୍ୱଳ୍ପଜ୍ଞାନ କଷଟିରେ ପ୍ରୀତି ନୁହେଁ ଧରା,
ପ୍ରାଣି ଗାଏ ହୁଏ ଦନ୍ତୁଂ ଦାନ ବିଷଭରା
ନୀରବ ନିଗମ ସ୍ତରେ ପୁଣ୍ୟ ପ୍ରାଣ ପୂଜା,
ତେବେ ହେ ପ୍ରଣୟୀ ପ୍ରୀତି ତତ୍ତ୍ୱହେବ ବୁଝା,
କୁଳେ ବୁଲି ନିତି ନିତି ତେଜ ଗଣିବାର—
ଅଶୋଭନ ବୃତ୍ତି କଲେ, ଡାକେ ପାର୍ବତ୍ ।
ଗରଳକୁ ସୁଙ୍ଘି କରୁ ଅମୃତ ଭରମ,
ସ୍ତୁପଲ୍ଲୀ ବୁଝଇ କାହୁଁ ସେ ତତ୍ତ୍ୱ ନିଗମ ?



# ପ୍ରଣୟ ଲିପି

କ୍ଷୁଦ୍ର ଜୀବନର କ୍ଷୁଦ୍ରତମ ଇତିହାସ,
ଭସ୍ମ କଲି ! ଅଗ୍ନିଶିଖା କଲା ହେଲେ ଗ୍ରାସ !
ସେଥିଲାଗି ପ୍ରଣୟିନୀ ନେଇ ଛଳ ଛଳ,
ଅପଣା ଅନ୍ତରେ କଲ୍ପି ଶତ ଅମଙ୍ଗଳ !
ସେ ଗର୍ହିତ କର୍ମ ଥାଉ ଦୂରେ କରିବାର,
ଅତୀତ ପ୍ରଣୟ ସ୍ମୃତି-ପୂଜାର ଅଧାର—
ଭସ୍ମ-କଳପନା ପାପ ! ତେଣୁ ମୁଖ ଭାର !
କହିଲି ମୁଁ ହସି "ଅଗୋ ତୁଚ୍ଛର ପୂଜାରି !
ତୁମ୍ଭ ଥରେ ମୁଖ ଟେକ ହୋଇଣି ଉଷତ.
ପଡ଼ି ରହିଅଛି ଦୀର୍ଘ ଜୀବନର ପଥ !

ପାର୍ଶ୍ୱେ ପ୍ରମୋଦ ଉଦ୍ୟାନ, କେତେ ଛାୟାବୀଥୀ,
ନିତ୍ୟ ନୂତନ ପ୍ରଣୟ ଫୁଲ ଫୁଟେ ନିତି;
ତା ପାଶେ ଝଙ୍କର ମରୁ ! ଭୁଲ ଗୋ ସୁନ୍ଦରୀ—
ପାରିବଟି ତହିଁ ପ୍ରୀତି ନିତ୍ୟ ନବ କରି ?
ସେ ନିତ୍ୟ ପ୍ରଳୟ ଲାଗି ହୁଅ ଗୋ ପ୍ରସ୍ତୁତ
ଅଦ୍ଭୁତ ଜୀବନେ ନିତ୍ୟ ପ୍ରଣୟ ଅଦ୍ଭୁତ !
ପୁରାତନ ଅତୀତ ଯା ସେ ତ ତୁଚ୍ଛ ଅତି,
ସୁଦୂର ଭବିଷ୍ୟେ ଯହିଁ ଢାଳ ଗୋ ପ୍ରଣତି !
ନିତ୍ୟ ଉଷା ନବ ପ୍ରୀତି ନବୀନ ଯୌବନ,
ଭବିଷ୍ୟ ଆନନ୍ଦ ଯହିଁ ଭୁଲ ପୁରାତନ !
ଉସ୍ ଯାହା ଅସୁନ୍ଦର ତହିଁ ଖେଳିବାର,
ପ୍ରଣୟର ନୁହେ ଅର୍ଥ କଳ୍ପନା ବିକାର;
ବିଶାଳ ଜୀବନ ! କ୍ଷୁଦ୍ର ଅତୀତ ପ୍ରଣୟ !
ଧରିବ କେସନେ କହ କରିବ ବା ଜୟ-
ଦୁର୍ଦ୍ଦାନ୍ତ ସୈନିକ ପ୍ରାଣ ? ବିଜୟର ଲିପ୍‌ସା-
ଜଳେ ଯେଉଁ ପ୍ରାଣେ ତୁଚ୍ଛ ଫୁଲତୋଳା ନିଶା !
ବିରଳ ଉଦ୍ୟାନେ ସ୍ୱପ୍ନ ପ୍ରଣୟ ବିଳାସ
ଦୁର୍ଦ୍ଦମ ପ୍ରଣୟୀ ମୃତ୍ୟୁ ଗଳା ନାଗ-ପାଶ ।
ପ୍ରଣୟର ମୃତ୍ୟୁ ଯହିଁ ? ଲୁପ୍ତ ଧନପରି—
ଲୁଚାଇ ରଖିବ କ୍ଷୁଦ୍ର ସମ୍ପୁଟେ ସୁନ୍ଦରି ?
କ୍ଷୁଦ୍ର କେତେ ପ୍ରୀତି-ଲିପି, ତୁଚ୍ଛ ପ୍ରଗଲ୍‌ଭତା,
ଲୁଚାଇବ କାହିଁ ତାକୁ ? ଏତେ ଗୋ ମମତା !
ଆସଇ ବାର୍ଦ୍ଧକ୍ୟ ଶୋଷିବାକୁ ପ୍ରାଣରସ,
ଶୋଷିବ କଳ୍ପିତ ପ୍ରୀତି ସ୍ୱପ୍ନର ଆଦର୍ଶ !

କି କରିବ ତହୁଁ ? ଜଠ ପ୍ରସାର ସେ କର
ରଙ୍ଗ ରୁଷ ହାତେ ହାତ ହେବା ଅଗ୍ରସର ।
ପାରିବ ତ ଭୁଲି ତୁଲେ ? ଦୂରେ ପ୍ରୀତିଶିଖା,
ସେ ପ୍ରୀତିରେ ସତ୍ୟ ହେଉ ଅମୃତର ଦୀକ୍ଷା !"



## ବାସରଫୁଲ

ଯେ କୁସୁମ ଆଜି ବନ୍ଧୁ ଦେଲ, କାଲି ଛିନ୍ନ,
ନ ବୁଝିଲ ସରଳ ପ୍ରାଣର ପ୍ରୀତି ଚିହ୍ନ !
ଯାର ରୂପ ସ୍ପର୍ଶ ଗନ୍ଧେ ହେଲ ଗୋ ବିହ୍ୱଳ,
ଦେଖିଛ କି ଅନ୍ତରାଳେ ତାର ଅଶ୍ରୁ ଢଳ ?
ଦେଖି ନାହିଁ ଯେବେ ବନ୍ଧୁ ନାହିଁ କିଛି ଦେଖି ?
ଦେଖ ଯେବେ ସ୍ମୃତିପଟେ ରଖିବଟି ଲେଖି ?
ଅଜ୍ଞାତ ସରଳ ପ୍ରାଣ ପ୍ରଥମ ମିଳନେ,
ଦେଲ ଯେ କୁସୁମ ଧରି ରଖିବଟି ମନେ ?
ସକଳ ମାଧୁରୀ ତାର ହୋଇ ନାହିଁ ଶେଷ,
ତୁଚ୍ଛ ଦଳ ବୃନ୍ତ ଲାଗି ତବ ମୋହାବେଶ,—
ଦେଖି ବୁଝିଲି ମୁଁ ଆଜି, ବାସର ଉତ୍ସବ
ସରିଲା ରଜନୀ ଶେଷେ ଯୁଣ୍ଟ ନାରୀଗର୍ବ !
ମଉଳି ନାହିଁ ସେ ଫୁଲ ସରିନି ମାଧୁରୀ,
ବାସର କୁସୁମ ବ୍ୟଥା ଯିବ ନାହିଁ ଭୁଲି ।

[୧୯୩୭]



# କୌଣସି ତରୁଣୀ ଲେଖିକାଙ୍କ ଉଦ୍ଦେଶ୍ୟରେ

ଦରିଦ୍ର ତରୁଣୀପ୍ରୀତ ନୁହେ ବ୍ୟଭିଚାର,
ବୃଥା କ୍ଷମା କର ଜାଣି ଅପବ୍ୟବହାର ।
ଲାଳସାର ପରିତୃପ୍ତି ନୁହେଁ ବାଣୀ ପୂଜା,
ପେଟେ କ୍ଷୁଧା ରଖି କେବେ ହୋଇବ କି ପୂର୍ଣ୍ଣ—
ପ୍ରଣୟର ପବିତ୍ରତା ? ପ୍ରାଣର ସୌନ୍ଦର୍ଯ୍ୟ
ତୁମ ବାଣୀ ବ୍ୟବହାରେ କୁତ୍ସିତ କଦର୍ଯ୍ୟ !
ତୁମର ରାକ୍ଷସୀ କ୍ଷୁଧା ଜିହ୍ୱା ଲେଲିହାନ
ଦାରୁଣ କଳପନା ନେନେ ! ଥରେ ମୂକ ପ୍ରାଣ !
ନାରୀ ହୋଇ ଶିଖି ନାହଁ ତଳେ ଶିଷ୍ଟାଚାର,
ଚିର ଶୁଭ୍ର ପୂଜ୍ୟ ଛାଡ଼ି କରୁଛ ପ୍ରଚାର—
ନାରକୀ ଧରମ, କରେ ଘାଣ୍ଟୁଛ ନରକ,
ହେଉଛ ପ୍ରଣୟୀ ହେବ କଣ୍ଠର ସ୍ତବକ ?
ଶୁଣି ତବ ଉଚ୍ଛୃଙ୍ଖଳ ଲାଳସା ଆହ୍ୱାନ, *
ଲଜ୍ଜିତ ସେ ଲକ୍ଷ କୋଟି ନରନାରୀଗଣ !
ଥରଇ ଦେବତା ଆତ୍ମା ଲଭି ମୃତ୍ୟୁ ବ୍ୟଥା,
କ୍ଷୁଧିତ ପ୍ରାଣର ଦେଖି ଅଶ୍ଳୀଳ ନଗ୍ନତା !
ଏ ଭୂମିରେ କୁତ୍ସିତ ସେ ଅଧର ଦଂଶନ,
ରାଜମାର୍ଗେ ଦିବା ଭାଗେ ପଶୁ ଆକ୍ରମଣ !
ପବିତ୍ର କୁସୁମ ଛାଡ଼ି ଦେବତାର ଶିର,
ନର୍କେ ଲୋଟିବାର ଦେଖି ବହେ ନେତ୍ରନୀର !

[୧୯୩୬]

* ପଦ୍ୟଟିରେ ଚୁମ୍ବନ, ଆଲିଙ୍ଗନାଦିର ଛବି, ଲିପ୍ସା ସୂଚିତ ହୋଇଥିଲା ।

# ଭିକ୍ଷୁଗୀତ

ଭୁଲିଲେ ତୁ କାଲକୁ ଭୋଳା,
କାଲ ତୋତେ ପାରେ କି ଭୁଲି ?
କେତେ ଦିନ ହେବୁରେ ସଜା,
ଆନ କେବେ ପଡ଼ାଇ ଧୂଳି ?
ଯିବ ଦିନ ସମାନ ତୁ କି
ଭାବୁ ? କାଲି ଦେଲେରେ ଫୁର୍କି,
ଘ୍ନ୍ୟାବାଜି ଉଭେଇ ଯିବ
ସନ୍ଧ୍ୟା ମେଘ ଯିବ ମଉଳି
ଧୂଳିରେ ଯେ ରଚିଛୁ ଘର,
ଦିଶେ କେତେ କି ମନୋହର,
ଅଚିରେ ସେ ପଡ଼ିବ ଟଳି
କାଳ କର ଗଳେ ରେ ବୁଲି । ୨ ।
ଭାବୁ ମନେ ଜୀବନ ନଦୀ,
ବେଗଗତି ଚିର ଅବଧି,
ଭୁଲ ଥରେ ମୁହାଣେ ଚଡ଼ା
ପଥ ତୋର ଦେବ ଅଗୁଳି । ।
ଦୂରଦେଶୀ ପଥିକ ଅରେ
ବସିଲେ ତୁ ଚୈତ୍ୟକୁ ଧାରେ,
ପଥ କେତେ ରହିଛି ପଡ଼ି,
ଭୁଲିଗଲୁ ପିଣ୍ଡ କି ତୁଳି । ୪ ।



## ଜନନୀ

୧— ଜନନି ଗୋ ଜନମିଲ ବହ୍ନି ଦୁଃଖଦୀକ୍ଷା !
ଦୁଃଖ ଅଶ୍ରୁ ବେଦନାରେ କ୍ଷୁଦ୍ର ପ୍ରାଣଶିଖା—
ନିଭିଲା ଅଜ୍ଞାତେ ! କରନାହିଁ କୋଳାହଳ,
ସଂଗ୍ରାମର କ୍ଷତ ଅଶ୍ରୁ ତୁମରି ସମ୍ବଳ !
ସେ ଶୁଷ୍କ ଅଧରେ ଦିନେ ଫୁଟିବାର ହାସ,
ପଡ଼େ ନାହିଁ ମନେ ! ବନେ ମରେ ଫୁଲ ବାସ,
ମରିଛ ତେସନେ, ପ୍ରାଣେ ସ୍ୱାର କର ତ୍ୟାଗ,
ମୃତ୍ୟୁଠାରୁ ବଳି ବାଧେ ତବ ଅନୁରାଗ !
ନିଶୀଥ ଅନ୍ଧାରେ ବସି ଜାଳିଛ ନୀରବେ
ସୃଷ୍ଟିର ମଙ୍ଗଳ ଦୀପ, ଦେଇଛ ଗରବେ—
ହୃଦୟ ଶୋଣିତ ! ସନ୍ତାନର ମୁଖେ ସ୍ତନ୍ୟ,
ମାରି ଆପଣାକୁ ଅନ୍ୟେ ଦେଇଛ ଜୀବନ !
ସେତିକି ସ୍ମାରକ ତବ ବୃଦ୍ଧବୃନ୍ଦ ଜୀବନେ !
କରୁଣ ନୟନ-ସ୍ମୃତି ଦହେ ଅନୁକ୍ଷଣେ ।
ଶୁଣିନାହିଁ ଦିନେ କାର ଆଦର ସୋହାଗ,
କେବେ କାନ୍ତ ଦେଖିନାହିଁ ଜୀବନେ ବିରାଗ !
ଭାରବାହୀ ପଶୁପରି ବ୍ୟଥା କରି ସାର,
ସକଳ ଦୁର୍ଦ୍ଦିନେ କରି ନାହିଁ ହାହାକାର,
ଚିର ଅବିଚଳ ଚିର ମୂକ ପରବତ,
ସ୍ଫୁରିତ ସେ ମ୍ଳାନ ନେତ୍ରେ ଦୈନ୍ୟର ମହତ୍ତ୍ୱ !
ଶୁଖିନାହିଁ ଏ ଅଧରୁ ତବ ସ୍ତନ୍ୟ ଦାଗ
ଶେଲସମ ବାଧେ ତେଣୁ ତବ ଅନୁରାଗ !

ଭାବୁଁ ତବ କଥା ଫେରି ଆସେ ମୋ ଶୈଶବ !
କର୍ଣ୍ଣ ଫାଟିପଡ଼େ ରୁଗ୍ଣ କନ୍ଦନର ରବ !
ମାତୃହରା ସନ୍ତାନର ମର୍ତ୍ତ୍ୟ କାହିଁ ସ୍ଥାନ ?
କେ କରିବ ମାତୃହରା ବେଦନା ସନ୍ଧାନ ?
ଝରିବ ଅଜ କା ବକ୍ଷୁଁ ଦୁର୍ଦ୍ଦିନେ ମମତା ?
ଦେଖିବ କାହୁଁ ବା ଅଜ ଦୁଃଖ ଆକୁଳତା ?

୨—ଉପବନେ କେତେ ମ୍ଳାନ ଫୁଲ ପଡ଼େ ଝରି,
ପୁଣି କେତେ ଉଠେ ଫୁଟି ଶିର ଉଚ୍ଚକରି,
ଉତ୍ଫୁଲ୍ଲ ତାରୁଣ୍ୟ ବସେ ଯେସନ ତରୁଣୀ
ହାସ୍ୟ-ଲାସ୍ୟେ ମର୍ତ୍ତ୍ୟେ ଆଣେ ସୁଧା ସୁରଧୁନୀ !
ମୃତ୍ୟୁକୁ ହଟାଇ ପ୍ରତ୍ୟୁ ହସଇ ଜୀବନ;
ଶେଷ ପରିଣତି ପଛେ ମୃତ୍ତିକା ଶୟନ ।
ଦେଇଛ କି ଚକ୍ଷୁ ଦୃଶ୍ୟ ଦେଖିବାର ଲାଗି—
ନଶ୍ୱର ଏ ଦେହେ ପ୍ରାଣ ରହିଅଛି ଜାଗି ?
ସକଳର ଅନୁଭୂତ ଦୂର ଦ୍ରଷ୍ଟାରୂପେ
କରଇ ଗୋଚର, ଦୁର୍ଭେଦ୍ୟ ଏ ଅନ୍ଧକୂପେ !
ସୃଷ୍ଟି ପରିଣତ ପ୍ରଶ୍ନେ ନାହିଁ ଅଧିକାର ?
ମାନବ ଦର୍ଶନ ପଛେ ନିଯୁକ୍ତ ଫୁଲାର ?
ଦେଇଛ ସୌନ୍ଦର୍ଯ୍ୟ ବୋଧ କାହିଁ କି ମମତା ?
କାହିଁ କି ପରାଣେ ଏ ଦୁଃସହ ପ୍ରୀତି ବ୍ୟଥା ?

୩—ବିପୁଳ ସୃଷ୍ଟିର ତୁମେ ପ୍ରାଣ ପାରାବାର,
ସଦା ଉଦ୍‌ବେଳିତ ନିତ୍ୟ ଶିର ନିରାକାର,

ଇନ୍ଦ୍ରିୟର ଅଗୋଚର ଅବ୍ୟକ୍ତ ଅଚିନ୍ତ୍ୟ,
ଜାଣି ପ୍ରଭୁ କାହିଁପାଇଁ ବିକଳ ଏ ଚିତ୍ତ ?
ଜାଣିଛୁ ଏ ଜୀବ ସୃଷ୍ଟି ସାଗରେ ବୁଦ୍‌ବୁଦ,
କେବେ ଲୀନ ମହାବକ୍ଷେ କେବେ ଉଦବୁଦ୍ଧ ।
ଜାଣେ ମୃତ୍ୟୁ ତୁମ କୋଳେ ପ୍ରଶାନ୍ତ ସୁଷୁପ୍ତି,
ଅଲଙ୍ଘ୍ୟ ବିଧାନ ଭୁଲି ଆତ୍ମ ପରିତୃପ୍ତି—
ଲୋଡ଼େ ସଦା ମୂଢ଼ ମନ ପରମ ନିୟନ୍ତା !
ଆପଣା ନିୟନ୍ତା ହୋଇ ଲଭେଁ ଖାଲି ବ୍ୟଥା ।
ଭାଳଇଁ ଜନନୀ ତୁଣ୍ଡେ ଦେଇଥିଲେ କ୍ଷୀର,
ବେଦନାର ରାତି ଜାଗି ଢାଳିଥିଲି ନୀର,
ଥାନ୍ତେ ଚିରକାଳ ପାଶେ ଆତ୍ମତୃପ୍ତି ଲାଗି
ଭୁଲିଯାଏଁ ଆତ୍ମା ଅମୃତର ଅନୁରାଗୀ !

୪— ବିରାମ ଲଭିଛ ତୁମେ ପରମ ଜନନୀ !
କ୍ଷୁଦ୍ର ବୁଦ୍ଧି ସୂକ୍ଷ୍ମଗତି ପାରେ ନାହିଁ ଟେଣି !
ତେଣୁ ଏ ଦୌର୍ବଲ୍ୟ, ଚକ୍ଷେ ଏ ଅଶ୍ରୁ ବିକାର,
ଜାଣେ ତୁମ ପ୍ରୀତି ମାତା ଘୋର ଅବସ୍ଥୁର !
ଭାଳେଁ ପୋଛୁ ଅଶ୍ରୁ କରି ଅଙ୍ଗ ପ୍ରକ୍ଷାଳନ
ତବ ଆତ୍ମା ଶାନ୍ତି ଲାଗି କରିବି ତର୍ପଣ ।
ବହିବି ଜୀବନେ ହସି ତବ ଦୈନ୍ୟ-ଦୀକ୍ଷା,
ଦେଲ ଯେ ପ୍ରଦୀପ କରେ ଜାଳିବି ତା ଶିଖା—
ପରମ ଯତନେ, ନିତ୍ୟ କରିବି ସ୍ମରଣ,
ପରମ ତ୍ୟାଗର ଶୁଭ୍ର ପ୍ରଶାନ୍ତ ନୟନ !
ଶାନ୍ତ ହେଉ ଚିତାନଳ ସନ୍ତାନ ଲୋତକେ ।
ଶାନ୍ତ ହେଉ ଚିତ୍ତ ଗ୍ଲାନି ତବ ପୁଣ୍ୟାଲୋକେ !

ସକଳ ଅପୂର୍ଣ୍ଣେ ଝୁନ୍ତ ଲଭୁ ଗୋ ପୂର୍ଣ୍ଣତା,
ଶବାସ୍ନ ଜନନ ! ସାର ହେଉ ତବ ବ୍ୟଥା !

୫—ପବନ ଶ୍ମଶାନ ଭୂମି ! ଶବ ଶବଦଗଧ,
କ୍ଷିତ ଅପ ତେଜ ବ୍ୟୋମ ବାୟୁ ନାସ୍ତବଧ,—
ଆଦରେ ନାସୃନ୍ତ ବର ଦେହୀ ଶେଷ ସଜ୍ଜା,
ପୋଛ ଶେଷ ଅଶ୍ରୁ ପୋଛୁ ଦଅ ସବୁ ବ୍ୟଥା !
ହୁଅ ଯୋଗଯୁକ୍ତ ! ବ୍ୟଥା ପରମ ଆନନ୍ଦ !
ଯେ ଆନନ୍ଦ ଲଭି ସୃଷ୍ଟି ନବାଙ୍କ ନାସ୍ପନ୍ଦ !
ନୀରବେ ମଙ୍ଗଳ ବିଧି କରଇ ସ୍ୱୀକାର,
ପରଶି ମରଣ ଯୋଗେ ଅଜ ନିର୍ବିକାର !
ଏହ୍ଵ ଯେ ପରଶ, ସ୍ପର୍ଶେ ବସ୍ତୁ-ଶବ-ଗନ୍ଧ,
ପ୍ରାଣପୂତ ପରିପ୍ଲୁତ ! ମୁକ୍ତ ହୁଏ ବନ୍ଧ !
ଯୋଗୀ-ଔଦାସୀନ୍ୟ ଶବ୍ଦେ ଯାଉଛୁ ତେତାଇ
ଅନ୍ତରାତ୍ମା ଉଠେ କହ୍ଵ "ଅରେ ଦୁଃଖ କାହିଁ ?"
ଏସନେ ଜନନୀ ନାଇ ଗଲ ତୁମ୍ଭ ସଜ୍ଜା !
ଧଳା ମେଘ ଖଣ୍ଡେ ମୋର ଅପୂର୍ବ ମମତା !

୬—କାନ୍ଦୁଛନ୍ତ କେତେ ପ୍ରାଣୀ ଅଜ ତୁମ୍ଭ ଲାଗି,
ତୁମ ସ୍ତନ୍ୟ ପୁଷ୍ଟ ମୋର ପ୍ରାଣ ବଇରାଗୀ
ବାହୁଲେ କରଇ ଜୀବନର ଜୟଗାନ !
ଶୂନ୍ୟ ଜୀବନର ପ୍ରଶ୍ନ ଅଜ ସମାଧାନ !
ଯେଉଁ ନିର୍ବିକାର ପ୍ରାଣ ଦୈନ୍ୟ ବିଦଗଧେ,
ତାର ଶ୍ରେଷ୍ଠ ପୁରସ୍କାର ଲେଉକ ସମ୍ପଦ,

ଦେଇଯାଅ ସେହି ପ୍ରାଣ ଏ ରକ୍ତେ ମିଶାଇ,
ନିର୍ବିକାର ଚିତ୍ତେ ସୃଷ୍ଟି ଜୟ ଗାନ ଗାଇ,
ଆନନ୍ଦ ପ୍ରଦୀପ ଜାଳି ମୃତ୍ୟୁ ଅନ୍ଧକାରେ,
ସୃଷ୍ଟିର ମଙ୍ଗଳ ସ୍ୱପ୍ନ ଚିର ନିର୍ବିକାରେ,
ମିଶିଯାଏଁ ହସି ହସି । ଜ୍ଞାନ ହେଉ ଜୟ !
ଛିଣ୍ଡ ଅପନବ ମୋର ଆନନ୍ଦ ଆଶ୍ରୟ !
ଯାଇଛ ଜନନୀ ଯାଅ ! ଆଶା ତୁମ ପଥ···
ଜୀବନେ ସାର୍ଥକ ହେଉ ମାତା ମନୋରଥ !

[୧୯୩୭]



## ପ୍ରବୁଦ୍ଧ ବିକାର

ସ୍ୱଳ୍ପ ବୁଦ୍ଧି କ୍ଷୀଣ ଜୀବୀ ନତ କର ମଥା,
ଫୁଲାଇ ଗୁଲିକୁ ଗଲା ! ଦେଖ ସେ ଉଗ୍ରତା—
ହାସ୍ୟ ଉପୁଜଇ ମନେ ଦେଖି ବ୍ୟବହାର,
ଦୁରାରୋଗ୍ୟ ହେବ ଶେଷେ ପ୍ରବୁଦ୍ଧ ବିକାର !
ହୋଇନି କର୍ତ୍ତବ୍ୟ ଜ୍ଞାନ, ଦାୟିତ୍ୱର ମୋହ,
ହବନ୍ତି ଦର୍ଶନ ! ତେଣୁ ଆତ୍ମସମାରୋହ ?
ପଢ଼ିବୁ ଓଲଟି ହେବୁ ଦବସେ ଜଲକା
ଅଙ୍କଟେ ବସିଲେ ଥରେ କାଳ ଗଲା ଧକ୍କା
ହସିବେ ଜନତା ସିନା ମଣ୍ଡ ଯାକୁ ମଷ୍ଟ ?
ଦେଖି ହେବେ ଖୁସି ତୋର ଭଗ୍ନ କାଣ୍ଡଦଣ୍ଡ ।

କାଳହସ୍ତେ ଚୂର୍ଣ୍ଣୀଭୂତ ଶତ ଭୀମ-ଗଦା,
ସମୃଦ୍ଧ ସାକେତ କେବେ ହୋଇଅଛୁ ପଦା,
ସ୍ପର୍ଦ୍ଧି ମାନବ କାହିଁ ତର୍ଜନ ଗର୍ଜନ,
କ୍ଷୁଦ୍ର କ୍ଷୁଦ୍ରତମ ଥରେ ହେଉ ତୋ ସ୍ମରଣ !



## ଭାରତବର୍ଷ

୧—ପୂରବ ପଶ୍ଚିମେ ରକ୍ଷ-ଦାନବର ଲୀଳା !
ମଧ୍ୟ ଏ ଭାରତ ଭୂମେ ଖେଳ ପୁଣ୍ୟଶୀଳା,
ଗାଉଛନ୍ତେ, "ସ୍ୱାର୍ଥ-ଚିନ୍ତା ସଦା ଅମଙ୍ଗଳ ।
ଆତ୍ମତ୍ୟାଗେ ସଦା ସୁଖ କୋଟି ଜନ୍ମଫଳ ।"
ଦେଖୁଛୁ ଏ ମୂକ ଧ୍ୟାନ୍ ଚିରକାଳ ରହ୍ୱ,
ସ୍ୱାର୍ଥର ଶୋଣିତ ସ୍ରୋତ ଯାଏ କେତେ ବହ୍ୱ,
କେତେ ଜାତି ଅଭ୍ୟୁଦୟ ପଲକେ ପତନ
ସକଳ ନଶ୍ୱର ମେଲେ ଚିର ସନାତନ
ହେ ଭାରତ, ସ୍ପୁରେ ତବ ଆତ୍ମତ୍ୟାଗ ଦୀକ୍ଷା !
ପରାର୍ଥେ ଏ ଦେଶ ରାଜା ପଥେ ମାଗେ ଭିକ୍ଷା,
ବିଶ୍ୱ ହିତେ କରେ ତ୍ୟାଗ ରାଜ୍ୟ ନାରୀ ଭୋଗ !
ସନାତନ ଏ ବିଶ୍ୱର ତବ ରାଜଯୋଗ !
ନିର୍ବାଣ ସରବ ହେଲେ ଅମୃତ ଧରମ,
ଏ ପୁଣ୍ୟ ଭୂମିର ମୋର ହେଉ କୋଟି ଜନ୍ମ !

୨—ମାନବର ଦର୍ପେ ଯେବେ ଥରୁଛନ୍ତେ ମାଟି,
କୋଟି ଆର୍ତ୍ତ କଣ୍ଠ ସ୍ୱରେ ନଭ ଯାଏ ଫାଟି,
ସ୍ୱାର୍ଥର ନିଶ୍ୱାସେ ଚତୁର୍ଦ୍ଦିଗ କମ୍ପିତ
ବସୁଧା ଶୋଣିତଲିପ୍ତା ! ଶୁଣେ ସେ ସଙ୍ଗୀତ—

"ସକଳ ପ୍ରପଞ୍ଚ ମିଥ୍ୟା ଭୂମା ସତ୍ୟସାର !
ତ୍ୟାଗେ ସୁଖ ସନାତନ, ପ୍ରଶାନ୍ତ ବିକାର !
ତ୍ୟାଗେ ଭୂମା-ଅନୁଭୂତ ! ଅମୃତ ଆନନ୍ଦ
ବିପଥ ମାନବ ଶାନ୍ତ ହେଉ ତବ ଦ୍ୱନ୍ଦ୍ୱ !".
ଜନନୀ ଭାରତ ତବ ସନାତନ ବାଣୀ
କରଇ ପ୍ରଚାର ନିତ୍ୟ ପର୍ବତ ବନାନୀ;
ଶୈଳ ଗୁମ୍ଫା ଶିଳା ସ୍ତମ୍ଭ ସର୍ବେ ସମସ୍ୱରେ
ଗାଆନ୍ତି ନିର୍ଭୟେ ସୃଷ୍ଟି ସ୍ୱାର୍ଥ ସଂଘର୍ଷରେ !
ଶମଇ ଶୋଣିତ ତୃଷା, ଆତ୍ମଘାତୀ ରଣ,
ହିମାଳୟ ସମ ହେଉ ସତ୍ୟ ସନାତନ !

## *ଆଧୁନିକ ବର୍ବରତା—

୧—ଥିଲେ ପୁରାତନ ଅହା ଜାତି ଯେତେ ଗୋଟି
ଏକେ ଏକେ ଧରା ପରେ ପଡ଼ିଲେଣି ଲୋଟି !
ବିଷଣ୍ଣ ମଳିନ ଯେସନେ ଅସ୍ତଗାମୀ ରବି
ସମୁଜ୍ଜ୍ୱଳ ଇତିବୃତ୍ତ ତାଙ୍କ ତୁଲେ ଯିବି।
ପୁରାତନ ଜାତି ଶିରେ ନବ୍ୟ ବର୍ବରତା,
ସଗର୍ବେ ପ୍ରଚାରେ ନିଜ ବିଜୟ ବାରତା !
ଦଳି ଅବନତ ଶିର କରେ ରକ୍ତପାନ
ପ୍ରାଣର ମର୍ଯ୍ୟାଦା ଆଜ ବୁଝେନାହିଁ ପ୍ରାଣି।
ଦୂରେ ଯେସନେ ଭଗବାନ ! ନ ହୁଏ ଶ୍ରବଣ
କ୍ଷୁଧିତ ଆତୁର ଜାତି ବିକଳ କ୍ରନ୍ଦନ !

* ଚୀନ୍ ଯାପାନ ଯୁଦ୍ଧ ଉପଲକ୍ଷରେ ।

ଚଳ ପଡ଼େ ପ୍ରାଣୀ ପଥେ ଯେହ୍ନେ ମାଛି ମଶା,
ସଗର୍ବେ ବିଜୟୀ ହସେ ଦେଖି ହୀନ ଦଶା ।
ତୁଚ୍ଛ ପଶୁ ପ୍ରାଣେ କେତେ ପୀରତି ମମତା,
ତାଂ ତହୁଁ କୁତ୍ସିତ ଘୃଣ୍ୟ ନିଷ୍ଠୁର ସଭ୍ୟତା !

୨—ବର୍ବର ସଭ୍ୟତା ! ସ୍ଥିର କର ତୋର ଗତି,
ଶାନ୍ତ ହେଉ ଧ୍ୱଂସ ଲୀଳା ଅସହ୍ୟ ଯେ ଅତି !
ଆଜ ଯେ ବୁଭୁକ୍ଷା ଅଗ୍ନି ଅନେ ଯାଏ ଦହି
କାଲି ସେ ଦହିବ ତୋତେ ପାରିବୁ ତ ସହି ?
ପୁରାତନ ବୋଲି ଯାକୁ କରୁ ଅବହେଳା,
ପ୍ରାଣର ମାଧୁର୍ଯ୍ୟ ତହିଁ ନ କରେ କି ଖେଳା ?
ସଜଳ ସ୍ନେ ନେହ ବେଦନା, କେତେ ତହୁଁ ତ୍ରାସ,
ନାହିଁ ଅବା ତହିଁ କେତେ ଯୁଗ ଇତିହାସ !
ଉଚ୍ଛୃଙ୍ଖଳ କୁତ୍ସିତ ଯା ଯାହା ଅମଙ୍ଗଳ
ଯେତେ ବର୍ବରତା କାଳ ହରିଛି ସକଳ ।
ଥାପିଛି ସହସ୍ର ଯୁଗ ମଙ୍ଗଳ ବିଭୂତି
ପୁରାତନ ମାନବର ସୂକ୍ଷ୍ମ ଅନୁଭୂତି !
ସଂହର ସେ ଧ୍ୱଂସଲୀଳା ପୂଜ୍ୟ ହେଉ ପ୍ରାଣ,
ପୂଜ୍ୟ ହେଉ ପୁରାତନ ଶିବ ଅବଦାନ ।

୩—ରଣଡଙ୍କା ତୂରୀଭେରୀ କମ୍ପାଏ ଆକାଶ
ଧ୍ୱନିତ ଚୌଦିଗେ ବିଜୟୀର ଅଟ୍ଟହାସ !
କୋଟି ଅସହାୟ ପ୍ରାଣ କାନ୍ଦଇ ଅନ୍ତରେ,
ସ୍ୱାର୍ଥୀର ଅମୋଘ ଯନ୍ତ୍ର ଚୂରଇ ନିଷ୍ଠୁରେ ।

ବର୍ବରତା ଶାନ୍ତ ମୈତ୍ରୀ କରେ ପଦାହତ,
ପ୍ରତିଷ୍ଠିତ ଯହିଁ ଦିନେ ଖ୍ରୀଷ୍ଟ ତଥାଗତ ।
ବହୁଛି ରକ୍ତର ବନ୍ୟା ଗରଜେ କମାଣ
ପ୍ରତିପ୍ର ବିଷାକ୍ତ ବାଷ୍ପେ ପ୍ରାଣୀ ଲୟମାନ !
ଆଜି ମଧ୍ୟ ତଥାଗତ ମାଗୁଛନ୍ତି ଭିକ୍ଷା,
ଖ୍ରୀଷ୍ଟ ହୃଦ ରକ୍ତଧାର ପଡ଼ିନାହିଁ ଫିକା,
ଅଦ୍ୟାପି ମାନବ ଦ୍ୱାରେ ଯାଉଛନ୍ତି ଡାକି,
"ସଂହର ସଂହର ଅସ୍ତ୍ର !" ଅଶ୍ରୁପୂର୍ଣ୍ଣ ଆଖି !
କିଏ ବା ଶୁଣିବ ଡାକ ଡାକିଲେ କାତରେ ?
ମାନବ ସେ ନାହିଁ ଆଜି ଆପଣାର ଘରେ !



## ଆଗଭର

ତରୁଣ ତାପସ ଆଗଭର

ହୁଅ ଆଗଭର !

ଦୁର୍ଦ୍ଦିନ ତମେ କ୍ଷୁଣ୍ଣ ନୋହୁ ତୋ ଅନ୍ତର ।
କ୍ଷୁଣ୍ଣ ନୋହୁ ତୋ ପରିଣତିଷ୍ଠା,
ଅଗ୍ନି ମନ୍ତ୍ରେ ଲଭ ପ୍ରତିଷ୍ଠା,
ନିର୍ଜୀବ ଶିରେ ପଦାଘାତ କର
ତରୁଣ ନିଶାଣ ତୋଳି ଧର !
ତର ନିର୍ଭୀକ ଆଗଭର !
ପଶ୍ଚାତେ ତୋର ମୃତ୍ୟୁ ସ୍ଥବିର,
ହସେ ନିର୍ଭୀକ ନତ ନୋହୁ ଶିର,

ପ୍ରାଣ ଅମୃତ ନିତ୍ୟ ଦାୟାଦ —
ଗାଇ ଜୀବନର ମନ୍ତ୍ର—
ଅଗ୍ରସର ହୁଅ ଅଗ୍ରସର ।
ବିଚିତ୍ର ଏଇ ସୃଷ୍ଟିର ରସେ ନିତ୍ୟ ତୁ ଅଧିକାରୀ,
ନିର୍ଜୀବ ଜ୍ଞାନ ମିଥ୍ୟା ଦୁଆରେ ଅନ୍ଧ ପୁଣି ତୁ ଭିକାରୀ ?
ଶୁଷ୍କ ଶ୍ମଶ୍ରୁ କି ଜାଣେ ତଥ୍ୟ ?
ନିର୍ଜୀବ ସେବା ଜୀବନ-ସତ୍ୟ ?
ଶିର ସବୁଜ ତୋ ତରୁଣ ସୃଷ୍ଟି !
ଆନନ୍ଦ ତୋର ସହଚର,
ବନ୍ଦ କର ତୋ ଶ୍ରବଣ ଦୁଆର
ଅଗ୍ରସର ହୁଅ ଅଗ୍ରସର !
ପିଚ୍ଛିଳ ପଥ ? ନାହିଁ ନାହିଁ ଭୟ !
ବିଦ୍ୟୁତ ତୋର ଗତି,
ଶିର ଜୀବନ୍ତ ତୋହଲଗି ସିନା
ବହନ୍ତି ମର୍ତ୍ତ୍ୟେ ଯୁଗ ଯୁଗ ଭାଗିରଥୀ ?
ପଢ଼ି ରହୁ ପଛେ ଯେତେ କୁତ୍ସିତ
ବ୍ୟଙ୍ଗ କୁତ୍ସା ଗ୍ଲାନି ଇଙ୍ଗିତ—
ତାରୁଣ୍ୟ ଅଧିକାରୀ !
ବୃଦ୍ଧ ଗତା-ଶୁର ମିଥ୍ୟା ଜଡ଼ତା
ଶିର ସିନା ହେବ ଭାରୀ ?
ସୃଷ୍ଟିର ଅପରୂପ ଆନନ୍ଦ,
ନିର୍ଦ୍ଦେଶ କରୁ ତୋ ଗତି ଛନ୍ଦ,
ବିଚିତ୍ର ! ରସେ ହେ ଶିର ! ରସିକ
ବାନ୍ଧ ଜୀବନ ଯନ୍ତ୍ର ।
ଅଗ୍ରସର ଅରେ ଅଗ୍ରସର ।

ଅଙ୍କୁରେ ଲୁଷ୍ଠାର ମୁଗ୍ଧ ଅଲୋକେ
ଫୁଟେରେ ପଦ୍ମଫୁଲ !
ଅନନ୍ଦେ ତାର ମୂଳ !
ଚିର ତାରୁଣ୍ୟ ତୁ ତାର ଦାୟାଦ
ଅତୀତ ଭ୍ରାନ୍ତ ଭୁଲ ।
ସେ କୁସୁମ ବନା କାହିଁ ତୋ ଶାନ୍ତ ?
ଅତୀତ ତାଡ଼ନା ମିଥ୍ୟା ଭ୍ରାନ୍ତ !
ସତ୍ୟର ସେନା କାହିଁକି ଅଟକ
ସ୍ମୃହିଁ ପଶ୍ଚାତେ ଥରଥର ?
ଅଗଭର ହୁଅ ଅଗଭର ।



## ବନ୍ଦୀ-ବନ୍ଦନା

ଜୀବନ ବନ୍ଧୁ ଜୟ ଜୟ ହେ !
ଜୟ ଚିର ମଙ୍ଗଳମୟ ହେ !
ଦୁର୍ଦ୍ଦିନେ ଙ୍ଗରେ ତବ ଭରସା,
ତମିରେ ତୁମର ପ୍ରୀତ ବରଷା,
କୌମୁଦୀ ଚିତ ପଟେ ସହସା
ଅନ୍ତର ଚିର ନିର୍ଭୟ ହେ !
ଜୟ ଚିର ମଙ୍ଗଳମୟ ହେ । ୧ ।

ଧାତ୍ରାର ଦୁଖ ଅବସାନେ,
ପରଶେ ଶୀତଳ ଛାୟା ପ୍ରାଣେ,
ସୃଷ୍ଟି ଉଛୁଲେ ତୁମ ଟାଣେ,

ସକଳ ଗ୍ଲାନି ମୋହ କ୍ଷୟ ହେ,
ଜୟ ଶିବ ମଙ୍ଗଳମୟ ହେ । ୨ ।

ଅନ୍ଧାରେ ବିଜୁଳିର ଚମକେ
ହୂଚ୍ଛିତା ଭ୍ରୀତହୃଦର ପଲକେ
ନିର୍ଜୀବ ଅଙ୍ଗ ମୋ ପୁଲକେ
ଲଭି ତୁମ ବାଣୀ ବରାଭୟ ହେ ।
ଜୟ ଶିବ ମଙ୍ଗଳମୟ ହେ । ୩ ।

ମରୁରେ ବହାଇ ପୁଣି ଝରଣା,
ହସେଁ ଉଷା ଅଲୋକବରଣା,
ମିଥ୍ୟାର ଭୟଭ୍ରୀତ ଯାତନା,
ସକଳ ମନ୍ଦହାସେ ଲୟ ହେ,
ଜୟ ଶିବ ମଙ୍ଗଳମୟ ହେ । ୪ ।

ଜୟ ହେ ପରାଣି ମହାସିନ୍ଧୁ !
ସ୍ୱବପୁଲ ମୁଁ ସଲିଳବିନ୍ଦୁ !
ଧନ୍ୟ ଦେଖି ସେ ମୁଖ ଇନ୍ଦୁ
ସକଳ ପାପଗ୍ଲାନିକ୍ଷୟ ହେ !
ଜୟ ଶିବ ମଙ୍ଗଳମୟ ହେ । ୫ ।

ଶୁଭ୍ର କୁସୁମ କେତେ ଝରଇ
ନବୀନ କୁଞ୍ଜବନ ଭରଇ
ନିର୍ଝର କଳଗୀତି ସ୍ଫୁରଇ
ଜୀବନ ଜୈବ ବାଣୀ ବହ ହେ
ଜୟ ଶିବ ମଙ୍ଗଳମୟ ହେ । ୬ ।

[୧୯୩୮]

# ଭକ୍ତର ଗର୍ବ

ତୁମରି ଗର୍ବ ହେଉ ଏ ଜୀବନେ ସାର,
ଅନ ଯାଗର ବଦଳି ହେଉ ନାରଖାର,
ତୁହି ହେ ଦମ୍ଭ ଅମ୍ଭାର ଅଭିମାନ,
ତୁଚ୍ଛତା ହରି ଏ ମରୁରେ ଅଣ ପ୍ରାଣ । ୧ ।

ତୁମରି ଗର୍ବେ ବକ୍ଷ ଗୋ ହେଉ ସ୍ଫୀତ,
ମିଥ୍ୟା ସମୀପେ ନିର୍ଭୟ କର ଚିତ,
ଚିର ମଙ୍ଗଳ ସକଳ ଦୀନତା ହର,
ଧ୍ରୁବ ହେଉ ତବ ବାଣୀ ଚିର ନିର୍ଭର ।। ୨ ।

ଅଳ୍ପର ମୋହେ ମାନବର ଅରାଧନା,
ଭ୍ରମେ କଲେ କେବେ କୁଣ୍ଠିତ ମୋ ରସନା,
କର ହେ ବିକଳ ନିଷ୍ଠୁର ଘାତେ ଜଡ଼
ତୁମରି ଗର୍ବ ହେଉ ଏ ଜୀବନ ବଡ଼ । ୩ ।

ତୁମରି ଗର୍ବେ ଅଶ୍ରୁ ଯାଉ ହେ ବହି,
ଅଖ୍ୟାତ ରହି ନ ସ୍ତୁତି ଘୃଣାରେ ମଜ୍ଜି,
ନ ପୂରୁ ଉଦର ଅଙ୍ଗେ ନ ମିତ୍ର ଜନା,
ତୁମରି ଗର୍ବ ନିତ୍ୟ ମୋ ଅରାଧନା । ୪ ।

ନିଃସ୍ୱ ଜୀବନ ହେଉ ଚିର ସମ୍ବଳ,
ତୁଚ୍ଛ ମାନବ-ବନ୍ଦନାରେ କି ଫଳ ?
ତବ ବନ୍ଦନା ଅନ୍ତର କରୁ ପୂତ,
ତୁଚ୍ଛର ମୋହ ଗର୍ବ ଭସ୍ମୀଭୂତ । ୫ ।

[୧୯୬୮]



# ବେଶ ରଚନା

ରୂପସୀ ରହସି କର ସୁବେଶ ରଚନା,
ନୟନେ ଫୁଟିଉ ତବ ବିଚିତ୍ର କଳ୍ପନା !
ବିଚିତ୍ର ସ୍ୱପନ ସେ ଗୋ ବିଚିତ୍ର ରହସ୍ୟ,
ଭୁଞ୍ଜିଲେ ଗୋପନେ ତହିଁ ନିତ୍ୟ ସୃଷ୍ଟି ରସ !
ଜାଣେ ନା ଉଡ଼ୁଛି ଅବା, ଗୁପ୍ତ ଅଭିସାର,
ବାସନ୍ତ ସଞ୍ଚାର ଭ୍ରାନ୍ତ, ରଜନୀ ବିହାର ।
ଦେଖିଛି ମୁଁ ବ୍ରୀଡ଼ାନତ ସେ ନୟନ ତଳେ
ପ୍ରୀତି-ସ୍ୱର୍ଣ୍ଣ-ଦୀପ ଜଳି ତହିଁ ପ୍ରତିଫଳେ !
ମନ୍ଦର ଅଙ୍ଗରେ ସେ ଗୋ ପରମ କଲ୍ୟାଣ,
ଅକ୍ଳେଶେ ପଡ଼ଇ ଧରା ଦିଗ୍‌ବିଜୟୀ ପ୍ରାଣ ।
ସକଳ ଜିଗୀଷା ଭୁଲି ନିଜେ ଦିଏ ଧରା,
ମଙ୍ଗଳର କେଉଁ ବାଣୀ ବେଶସଜ୍ଜା ପରା ?
ସାଜ ଗୋ କଲ୍ୟାଣମୟି ତୁମେ ସେ ଅଳୀକ,
ଦୂରେ ଦୀନ ବନ୍ଦୀ ଗାଏ ସୃଷ୍ଟି ମାଙ୍ଗଳିକ ।



# ପଥେ ଘାଟେ

ପଥେ ଘାଟେ କେତେ ଭରମିଲି ଏକା
ଡାକନାହିଁ ସିନା ତୁମରି ଦୁଆରେ,
ପ୍ରୀତି-ବାଣୀ ଯେତେ ନ ମାନିଲା ମନ
ମିଶିଲା ଗୋପନ ପ୍ରାଣ ହାହାକାରେ;
ଭରମେ ଭରମି ପାଦଗଲା ଭାଜି,
ଅଖିପାଣି ମଲା ଦେଖି ଛାୟାବାଜି,
ଦୂର ନଭ ଶଶି ପଡ଼ିଲାକି ହାତେ ?
ମିଶିଗଲା ବେଳାକାଳ-ପାରାବାରେ ।୧।

ନ ପୂରିଲା ଆଶା ନ ଶମିଲା ବ୍ୟଥା,
କେତେ କାହିଁ ବାକି ରହିଗଲା କଥା,
ସକଳ ଶୂନ୍ୟତା ଭେଦ ବାଜଉଠେ
ତୁମରି ବିରହ ଶ୍ରାବଣ ଅନ୍ଧାରେ ।୨।

ତୁମରି ବିରହ ଆଜି ସ୍ମୃତିଧାର,
ଆସ ପ୍ରିୟତମ ମୋ ଘର ସୁନ୍ଦର,
ପର ପରି କଲ କେତେ ହତାଦର;
ପର ପ୍ରୀତି ରସେ ଶମଇ କି ତୃଷା ?
ବଳଇ କି ପ୍ରୀତି ଝରା ଫୁଲହାରେ । ୩ ।

---

## *ବଧୂ-ଦର୍ଶନ

୧— ଦେଖି ଆସିଅଛ କନ୍ୟା ? ହୋଇଛନ୍ତି ପସନ୍ଦ ?
ଅବ୍ୟକ୍ତ ସେ ମୁଖପଦ୍ମ ଯେହ୍ନେ ପର୍ବଚନ୍ଦ୍ର ?
କବ ଗୃତୁସର ତହୁଁ ତଳେ ସ୍ଥାନ ନାହିଁ ?
ପରିପୂର୍ଣ୍ଣ ଏ ଜୀବନ ଥରେ ଦେଲେ ଗୃହିଁ ?
ବଧୂଲି ଅଧରୁ ଅବା ରକ୍ତପଡ଼େ କ୍ଷରି ?
ରକ୍ତାଭ ସେ ଗଣ୍ଡେ ଯାଏ ପଲକେ ସଞ୍ଚରି—
କେତେ ନବ ଭାବ ପ୍ରୀତି ମମତା ଦ୍ୟୋତକ ?
କ୍ଷଣେ କ୍ଷଣେ ଜାଗେ ଅଙ୍ଗେ ଅପୂର୍ବ ପୁଲକ ?
ନିର୍ଜୀବ ଏ ନାରୀ ସୃଷ୍ଟି ? ନାହିଁ ବା ସ୍ପନ୍ଦନ ?
ସେ ନାରୀ ଜୀବନ ତହିଁ ଅପୂର୍ବ ସ୍ୱପନ ?
ଭାବମୟୀ ସେ ଗୃହିଣୀ, ସେ ଶିଳ୍ପ ଅତୁଳ ?
ଉଷା ଲୋକେ ଅର୍ଦ୍ଧସ୍ଫୁଟ ମୁଗ୍ଧ-ପଦ୍ମଫୁଲ ?
ପଦ୍ମ ବା କିଂଶୁକ ଥରେ ଦେଖିଗଲ ଜାଣି ?
ଅଥବା ଗୋଲାପ ପ୍ରୀତି ନାଶା ହୁଏ ହାଣି ?

୨—କ୍ଷଣିକର ଦେଖା ! ଶତ୍ରୁ ହେଲ ଶରଦାସ ?.
ଜାଣିଛ ତ ବନ୍ଧୁ ନୁହେ ପ୍ରୀତି-ଉପହାସ ?
କ୍ଷଣିକର ଜ୍ଞାନ ! ତହୁଁ ଏତେକ ଗରବ !
ଥିବ ଅବା ଦିବ୍ୟ ଦୃଷ୍ଟି ! ଦେଖିଛ ସରବ ?
ଦେଖିଛ. ଅନ୍ତରେ ଦିବ୍ୟ ଦେବତା ମନ୍ଦର ?
ଲଭିଛ ସେ ପୁଣ୍ୟପ୍ରଭା ରମଣୀ ସୃଷ୍ଟିର ?

ଦେଖିଛ ଗୋପନ ଛାର ଅଶ୍ରୁସିକ୍ତ ପ୍ରାଣ ?
ନିତ୍ୟ ସୃଷ୍ଟି ନାରୀ ଯହିଁ କରେ ସାମଗାନ ?
ଦେଖିଛ ନାରୀତ୍ୱ ଶକ୍ତି ଅପୂର୍ବ ସାହସ ?
ପୌରୁଷ ସୁନ୍ଦର ଲଭି ଯା ସ୍ନିଗ୍ଧ ପରଶ ?
ସଂଗ୍ରାମେ କମ୍ପିବ କାହ୍ନ ଅଛି ମନେ ବଳ ?
ପୌରୁଷର ଖାଦ୍ୟ ଲାଗି ଅଛି ନା କୌଶଳ ?
ଅବା ସେ ଗୋଲାପ ମ୍ଳାନ ହେବ ସୂର୍ଯ୍ୟ ତେଜେ ?
ଥାପିବାର ସାର ଦୁଗ୍ଧ ଫେନନିଭ ଶେଯେ ?

୩—ମୋ ପୀରତି କଥା ପୁଛୁ ? ନାହିଁ ଶୁଣା ଜଣା,
କାଳସ୍ରୋତେ ଭେଟ ହେଲା ଅଜ୍ଞାତ ଲଳନା,
ଅର୍ଦ୍ଧ ସ୍ଫୁଟ ସ୍ରୋତ-ଫୁଲ କରେ ନେଲି ତୋଳି,
ବର୍ଷ ଅନ୍ତେ ଉତ୍ତରୀ ମୁଁ ନ ପାରିଲି ଖୋଲି ।
ତାରୁଣ୍ୟ-ଉଦ୍‌ବେଗ-ବ୍ୟଥା ଦେଲା ନାହିଁ କହ୍ନୁ
ଅନବଦ୍ୟ ବ୍ରୀଡ଼ା ଦେଖି ଗାଏ ହେଲା ଦହ୍ନ !
କରିଛୁ ସହସ୍ରାଘାତ, ବୁଝିନି ସେ ଅର୍ଥ,
ଆତ୍ମ ପରକାଶ ଲାଗି ଥର ଅସମର୍ଥ !
ନ ବୁଝି ମୋ ନିଷ୍ଠୁରତା ସଜଳ ଲୋଚନ,
ଶିଶୁସମ କରିଛୁ ସେ ଆତ୍ମସମର୍ପଣ ।
ପରିଚୟ ହେଲା ଯେବେ ଶେଷ ମଧୁକାଳ !
ନିଃଶେଷ ତାରୁଣ୍ୟ ଦୀପ୍ତି, ସେ ନର-କଙ୍କାଳ !
ନୁହେ ସେ ଗୋଲାପ, ତେଣୁ ଦେଇ ନାହିଁ ପୀଡ଼ା,
ସକଳ ବିସ୍ମୃତ ମେଳେ ଜୀବନ୍ତ ତା ବ୍ରୀଡ଼ା !

୪—ସହସ୍ର କଳ୍ପନା ମୋହ କବରୀ ସ୍ତୁପୀ,
ତାରୁଣ୍ୟ ବାସନା ପଦେ ହୋଇଛି ତା ଚୂଳ ।
ବୁଝିନି ତା ଅର୍ଥ ସେହି ଅବୋଧ ବାଳିକା,
ମନେ ହସେ ! କେବେ ବସ୍ତ୍ର ଦେଖି ବାହ୍ୱାପିକା !
ଡାକିଲେ ସୋହାଗେ ଥରେ ଏକାନ୍ତେ ରହସି,
"କି ଅବା ଗୁପତ କଥା ?" ଛୁଇଁ ଯାଏ ହସି !
ଭୁଲିଅଛୁ ଯେତେଥର କରିବି ମୁଁ ତ୍ୟାଗ,
ହୃଦତର କଣ ବାନ୍ଧେ ତାର ଅନୁରାଗ ।
ଜୀବନ ସଂଗ୍ରାମେ ଯହିଁ ନ ପାରେଁ ଭରସି,
ଅମୋଘ ବିକ୍ରମ ଦମ୍ଭେ କାନ୍ଧ ଦିଏ କଷି ।
ବ୍ୟର୍ଥତାର ଅବସାଦେ ପଡ଼ିଲେ ମୁଁ ଲସି,
ଯାମ ନେନି ମ୍ଳାନ ଓଷ୍ଠଧାରେ ଯାଏ ହସି ।
ଭାଙ୍ଗିଲେ ଯହିଁ ଶୂନ୍ୟପାତ୍ର, ରକ୍ତ ମାଂସ ଛିନ୍ନ—
ସ୍ଫୂର୍ତ୍ତି ଦୀପ୍ତି, ତହିଁ ପ୍ରୀତିପୂର୍ଣ୍ଣ ପରିଚୟ !
ତ୍ୟାଗ କରେ ଯେଉଁ କର ଝାଣି ଶିଳା ପର
ଭଙ୍ଗରେଁ ସଂସାରମରୁ ହୃଦେ ତାକୁ ଧର ।
ମଳିନ ତାରୁଣ୍ୟ ମୋହ, ବଢ଼ିଲ ବୟସ;
ଚୂଡ଼ତର ମାତ୍ର ପ୍ରୀତି ଦୁର୍ବୋଧ ରହସ୍ୟ !

[୧୯୩୮]



* କୌଣସି ବନ୍ଧୁଙ୍କ ବିବାହୋପଲକ୍ଷେ

## ମାଟିର ଉପହାସ

ତୋଳୁଥିଲି ବାସ ଢାଳି ସକଳ ନୈପୁଣ୍ୟ,
ପଡ଼ନାହିଁ ଘାତ, ଜମା ପାଶେ ଇଟା ଚୂନ;
କେତେ ସୁଖ କଳପନା ଯାଉଥିଲି ଗଣି
କାହିଁ ଉପବନ, କାହିଁ ସ୍ଥାପିବ ଧରଣୀ।
ଉଜ୍ଜ୍ୱଳ ଦର୍ଶିବ ପୁର ପ୍ରିୟା-କାଶ-ହାସେ,
ଅପୂର୍ବ ଆନନ୍ଦ ପୁଣି ଶିଶୁକଣ୍ଠ ଭାଷେ;
ମାଟିରେ ଉଠିବ ଗଢ଼ି ସ୍ୱର୍ଣ୍ଣ ସିଂହାସନ,
ମାଟିର କୁଟୀର ହେବ ଦେବତା-ଭବନ।
ଢାଳି ତାର ମନ ପ୍ରାଣ ଅପୂର୍ବ କୌଶଳ,
ଭାଳିଥିଲି ଫୁଟାଇବ ମରୁରେ କମଳ,
ଶେଷ ହେଲା କ୍ଷଣେ ସବୁ ଚିନ୍ତା ଫିକର ଫନ୍ଦ,
ଆସିଲା ସେପାରୁ ଡାକ ! କ୍ଷଣେ ହେଲା ଧନ୍ଦ—
ଶିଶୁ ସମ ! ଇଟା ଚୂନ ହସେ ଅନ୍ଧକାରେ !
ଶୁଭେ "ରାମ ନାମ ସତ୍ୟ" ନିର୍ଜ୍ଜନ ନିଶାରେ।



## *ଜନ-ସମସ୍ୟା

— —

ଯୁଗଳ ଘାଟ ବନ୍ୟା-ଅର୍ଥୀ ଦୂର ପଶ୍ଚିମ ଯାତ୍ରୀ !
ବାଷ୍ପୀୟ ପୋତେ ତୃତୀୟ ଶ୍ରେଣୀରେ ସ୍ୱଳ୍ପ ଅସନ ପାତ,
କଟାଇ ଦେଲେଣି ସିନ୍ଧୁ ବକ୍ଷେ ସାତୋଟି ରଜନୀ ଦବା,
ବାହାର ନିଗମ ଅଧାର ପଥ ଉଦ୍ବକ୍ଷ୍ୟ କାର କବା—

* ଡାକ୍ତର ମାୟାଧର ମାନସିଂହଙ୍କର ବିଲାତ ଭ୍ରମଣକାହାଣୀ ପଠନାନ୍ତର।

କେହି ନ ଜାଣଇ ଅଭ୍ୟନ୍ତରେ କେଳି ଜନ ଅଶା ଉଛ,
ସେଥିଲାଗି ଶତ ଯାତ୍ରାର ପୀଡ଼ା କେଳି ଜନ ଅଗେ ତୁଚ୍ଛ ।
ତୃତୀୟ ଶ୍ରେଣୀର ଯାତ୍ରୀ ବେଦନା ଅସହ୍ୟ କେଳି ଅଙ୍ଗେ,
ସହଯାତ୍ରୀ ସେ ପୁଛେ ବନ୍ଧୁକୁ ଯୌବନ-ରସ-ରଙ୍ଗେ;—
"ଦରିଦ୍ର ମୁହିଁ ବରିଛି ଏ ଦଶା, ନାହିଁ ମୋ ଉପାୟ ଅଉ,
ତୁମେ କାହିଁପାଇଁ ସହୁଛ ନର୍କେ ସମ୍ପଦ ଏତେ ଥାଉଁ ?
ଧନିକର ସୁତ ସୁଖର ଦାୟାଦ ସ୍ୱେଚ୍ଛାରେ ବର ଦୈନ୍ୟ ?
ନିଷ୍କୃତି ନାହିଁ ଦେବେ ତଳେ ଏଥି ବର୍ବରତାର ସୈନ୍ୟ *।"
"ଜାଣନା ବନ୍ଧୁ !" ଉତ୍ତରେ ଅନ "ଅଭିଜାତ ଛବି ତଳେ,
ଜୀବନ ଦୈନ୍ୟ କରୁଣ-କାହାଣୀ-ମନ୍ଦ-ପ୍ରଦୀପ ଜଳେ !
ଜାଣନା ବରିଛି ସ୍ୱେଚ୍ଛାରେ କାହିଁ ନୀୟତିର ଉପହାସ
ଦୈନ୍ୟର ବ୍ରତ ବହିଛି ସୁଖେ ମୁଁ, ଶୁଣ ମୋର ଇତିହାସ ।"

—୨—

"ତକ୍ଷଶୀଳାର ଅଧିବାସୀ ଅମେ ଚୌଦ ଭଗିନୀ ଭାଇ
ଜନକ ଜନନୀ ସହାୟ ଅମର ଅଗପଛ କେହି ନାହିଁ ।
ରୁଗ୍‌ଣା ଜନନୀ, ବିବ୍ରତ ପିତା, ବୃତ୍ତି ଅଧ୍ୟାପନା,
ସ୍ୱଳ୍ପ ବେତନ ମିଳେ ଯା ମାତର ଅୟରେ ନୁହେ ସେ ଗଣା ।
ଅକାଳରେ ପୁଣି ବୃନ୍ତଚ୍ୟୁତ ଚୌଦରୁ ତିନି ଜଣ
ରହିଗଲେ ବାକି ଯେତେ ଜଣ ସାର ନିଯୃତ ସହିତେ ରଣ ।
ବୃଦ୍ଧ ବୟସେ ଜରନ୍ତ ପିତା କ୍ଳାନ୍ତିବିହୀନ ଶ୍ରମ,
ଅମରି ସୁଖର ଶତ୍ରାରେ ସେ ଯେ ନିତ୍ୟ ଗଳଦ୍‌ଘର୍ମ ।
ରୁଗ୍‌ଣା ଜନନୀ ଅମ ଶତ୍ରାରେ ଦିନୁ ଦିନ କ୍ଷୀଣତର
ଦିନେ ତାଙ୍କରି ଯତ୍ନ ଚେଷ୍ଟା ଜାଣିନାହିଁ ଅବସର ।

* ସାଧାରଣ ନୌଯାତ୍ରୀ ଦଳ ।

ଅଗ୍ରଜ ମୁହିଁ ସନ୍ତାନ ଗଣେ, ହେଲ ଦନ୍ତ ମୋର ଜ୍ଞାନ—
ଏକଇ ପ୍ରଶ୍ନ ନିତ୍ୟ ଦିବସ ବ୍ୟାକୁଳ କରିଛି ପ୍ରାଣ ।
କି ଲଭ ଯତ୍ନେ ବ୍ୟର୍ଥ ପ୍ରୟାସେ ମିଳେ ତାହିଁ ଅମୃତ—
ଇଚ୍ଛାରେ ଗଳେ ଲଗାଇଲେ ଫାଶି ଦୈନ୍ୟ ସ୍ୱେଚ୍ଛାକୃତ ?
ପିତା ହେଲ ଅବ ନମସ୍ୟ ଗୁରୁ, ଅମୃକୃତ ଯେ ପାପ—
ଫଳ ତା ଲଗି ସମ ଅନୁଭୂତ ବ୍ୟର୍ଥ ମନର ତାପ ।
ଦୁର୍ବହ ଏଇ ସଂସାର ଭାର ବହିଲେ ଯେ ପିତା ଜାଣି
ଅବିବେଚନାର ଫଳ ଭୋଗୁଁ ଅମେ ନିରୀହ ତୌଦ ପ୍ରାଣୀ ।
କେବେ ଦିନେ ଦିନେ ଅସହ୍ୟ ହେଲେ ଦୈନ୍ୟ ଅଭାବ ପୀଡ଼ା,
ମୁକ୍ତ କଣ୍ଠେ କହିଛି ପିଅରେ ଦିଲ ମୁଁ ବିନୟ ବ୍ରୀଡ଼ା—
ବେଲସୁଁ ଉପାୟ ଖୋଜନାହିଁ ତୁମେ ଖଟାଇ ଅପଣା ବୁଦ୍ଧି
ନଦୀ ସ୍ରୋତ ପରି ବଂଶ ସହିତେ ଦୈନ୍ୟର ଜ୍ୱାଳା ବୃଦ୍ଧି ।
ଥରେ ନୁହେଁ ବାପୁ ତିନି ଥର ଜାଣି କରିଅଛି ଦୋଷାରୋପ,
ଦେଖିନି ମାତ୍ର ଜନକ ଜନନୀ ନୟନ କୋଣରେ କୋପ ।
ଅଜ୍ଞାନେ ଦିନେ କହିଲ "ଦିଅନା ଅହୁରି କେତୋଟି ମାରି
କିବା ପୌରୁଷ ମିଳଇ ଏସନ ହଳାହଳେ ନିତ ଘାରି !"
ସେଦିନ ଦେଖିଛି ଲଜ୍ଜିତ ପିତା ଅବନତ କଲେ ଶିର,
ଅନୁତାପାନଳେ ତୀବ୍ର ଦଗ୍ଧ ମାତର ଶାନ୍ତ ଗିର ।
କହିଲେ "ବାପୁ ମୋ ମନ୍ଦଭାଗ୍ୟ ଦୁନିଅରେ ଅଉ କାହିଁ ?
ଅପଣାର ମୋର ଦୁଷ୍କୃତ ଲଗି ଅଉ କିଏ ହେବ ଦାୟୀ ?
ଇଚ୍ଛା କରନି ତୌଦକୁ କେବେଁ, ଲୋଡ଼ିଥିଲ ତିନି ପୁଅ;
ପୁଅକୁ ତୌଦ କଲ କେ କାହିଁକ ନ ପାରିଲ ଥରେ ବାରି ।
ଖଟାଇଛି ସବୁ ବୁଦ୍ଧି ପ୍ରଜ୍ଞା ପରାହତ ହେଲ ଜ୍ଞାନ,
ଏକଇ ସତ୍ୟ ହୋଇଛି ପ୍ରତୀତ ସୁନ୍ଦରତମ ପ୍ରାଣ !"

—୨୮୦

ସୁନ୍ଦର ମୋର ଚୌଦ କଳିକା ! କେଣେଗଲେ ତନ୍ନ ଅହା?
ସେହି ଶୂନ୍ୟତା ପୂରଇବ କିଏ ? ସହାୟ ସେ ରଜ-ବାହା !
କରିଛି ତ କେତେ ପ୍ରାୟଶ୍ଚିତ୍ତ ! ପେଷିଛି ଶମନ ପୁରେ,
ତନୋଟି ପ୍ରାଣର କମଳ କଳିକା ! ପୁଚ୍ଛୁଅଛି ମୁଁ ଅନ୍ତରେ !
ଅଭେଦ୍ୟ କ୍ରୂର ନିୟତର ଦ୍ୱାରେ ପାଇ ନାହିଁ ଉତ୍ତର,
ଦେଲ ଅଜ୍ଞ ବାଳୁ ତୋତେ ସ୍ୱାଧୀନତା

ଇଚ୍ଛା ଯୋ ଯାହା କର ।

ଇଚ୍ଛା ଯାହାକୁ ଦିଅ ଅଜ୍ଞ ବଳି ମିଶାଇ ଏ ବେଳ ପ୍ରାଣୀ !
ଉପାୟ ନ ଦିଶେ !" ରୁଦ୍ଧ କଣ୍ଠ ! ନୟନୁ ଝରଇ ପାଣି !
ହଜିଲା ସକଳ ତରୁଣି ଦମ୍ଭ ଗୁହିଁ ସେ ଅହତ ମୁଖ,
କରୁଣି ନୟନ ସ୍ମରିଲେ ବନ୍ଧୁ ତୁଚ୍ଛ ସକଳ ଦୁଖ !
ସୃଷ୍ଟିରେ ମୋର କିବା ପ୍ରୟୋଜନ-ପ୍ରୟୋଜନ କିବା କାର
ବୁଝିଲ ସେ ଦିନ ବନ୍ଧୁ ପ୍ରଶ୍ନେ ନାହିଁ ମୋର ଅଧିକାର ।
ପିତା ନୁହେଁ ମୁହିଁ ! ସେ ଦିନୁ ବରିଲି ପିତାର-ଆତ୍ମ-ଦାନ,
ସୃଷ୍ଟିର ଲାଗି କୃଚ୍ଛ୍ର ସାଧନ ଦୀପ୍ତ କଲା ମୋ ଜ୍ଞାନ !
ସିନ୍ଧୁ ବକ୍ଷ ଅନ୍ଧାରପରି ଶର ରହସ୍ୟମୟ,
କ୍ଷୁଦ୍ର ଜୀବନ ! ମାତର ବନ୍ଧୁ ମୃତ୍ୟୁକୁ କରେ ଜୟ !
ତୁଚ୍ଛ ତାଠାରୁ ସ୍ୱାର୍ଥ ଅଶ୍ରୁ , ତୁଚ୍ଛ ଶତ ସମସ୍ୟା,
ଜୀବନର ସ୍ରୋତେ ଭସାଇ ପାରିଲେ

ଅବ କି ଦୈନ୍ୟ ଦଶା ?"



## *ବନ୍ଦୀ-ବୀର—

ଯୁଝିଛ ଜନମ ଭୂମି ମାନ ରକ୍ଷା ଲାଗି
ଅକ୍ଳାନ୍ତ ପରାଣେ, ସ୍ମୃତି ରହୁଥିବ ଜାଗି !
ଏ ଧରାର ନିପୀଡ଼ିତ ପଦାନତ ବନ୍ଧ
ଶିଖିବେ ତୁମଠୁଁ ବୀର ମରଣ ଅନନ୍ଦ ।
କାହିଁକି କୁଞ୍ଚିତ ଭୂରୁ ? ମୁଖ ଅବସନ୍ନ ?
ବେଦନାର ଛାୟାପାତ ? ସମ୍ମୁଖେ ମରଣ ?
ପଛେ ପୁଣି ମୃତ୍ୟୁ ସେନା ହସଇ ବିକଟ ?
ସମ୍ମୁଖେ ସେ ବଧ ଭୂମି ଅତି ସନ୍ନିକଟ ?
ତହିଁ ତବ ମର ଦେହ ହେବ ଦ୍ୱିଖଣ୍ଡିତ,—
ମିଶିବ ମାଟିରେ ? ସେଥିଲାଗି ସଙ୍କୁଚିତ ?
ଭୁଲିଥିଲ ଅବା ଯୁଦ୍ଧେ ମାରି ଅଗଣନ,
ବରିଥାନ୍ତ ହସି ହସି ବୀରର ମରଣ ?
ବୀରର ମରଣ ନିତ୍ୟ ବୀର କରେ ଦାବି
ମାତ୍ର କାଳହସ୍ତେ ଗୁପ୍ତ ନରଭାଗ୍ୟ ଚାବି ।
ଜାଣେ, ସେ ଉତ୍ୟକ୍ତ ପ୍ରାଣ ଶୋଣିତ ତୃଷିତ
ଦେଖି ନର ନିଷ୍ପେଷଣେ ବାଷ୍ପରୁଦ୍ଧ ବ୍ୟଥିତ ।
ସଭ୍ୟତାର ଅତ୍ୟାଚାର ଦୁର୍ନିବାର ପୀଡ଼ା
କ୍ଷୁବ୍ଧ ଦେଖି ହେବ ତୁମେ ଦାନବର କ୍ରୀଡ଼ା !

* ଅବସିନିଆର ସେନାଧକ୍ଷ ରାସ୍ ଦେସ୍ତା । ସେ ଗତ ଇଟାଲି-ଅବସିନିଆ ଯୁଦ୍ଧରେ ପରାସ୍ତ ହୋଇଥିଲେ । ପରେ ବନ୍ଦୀ ହୋଇ ଶତ୍ରୁ ହସ୍ତରେ ହତ ହୋଇଥିଲେ ।

—ମ୨

ନ ପୂରୁଁ ପିପାସା ଅଟପ ପଡ଼ିଗଲ ଧରା,
ଶତ୍ରୁ ହସ୍ତେ ତୁମ ପ୍ରାଣ ସମାଧାନ ପରା ?
ଫୁଟିଛ ଅକ୍ଳାନ୍ତ ମଦେ ! ସେତକ ଅଶ୍ୱାସ !
ଅନ୍ୟାୟ ମିଥ୍ୟାର ତଳେ ହୋଇନାହଁ ଦାସ !
ରହିଅଛି ତବ ଜନ୍ମଭୂମି ଠାଣ ମାନ,
ବିଫଳତା ଲଗି ଦୁଷ୍ଟ ଦେବତା ବିଧାନ ।
ମରଣର ଯାତ୍ରୀ ତୁମ୍ଭେ ନାହିଁ କାଳ ପାଶ,
ବୀରତ୍ୱେ ନୁହଇ ମରଣର ଝମ୍ପାପାତ,
ହୁଅ ବୀର ନିର୍ବିକାର ନୁହ ଅଜ କ୍ଷୁଣ୍ଣ;
ଅସୁଛନ୍ତି କୋଟି ସେନା କରିବାକୁ ପୂର୍ଣ୍ଣ—
ଅପୂର୍ଣ୍ଣ ରହିଲ ଯାହା, ଜଳିବ ଅନଳ,
ଭସ୍ମ ହେବ ଦିବ୍ୟ ଭୂମେ ମାନବ ଗରଳ ।
ସଂଗ୍ରାମର ଅନ୍ତେ ହେଉ ଅଟଳ ବିଶ୍ୱାସ
ସକଳ ପ୍ରପଞ୍ଚ ମେଳେ ଦେବତ୍ୱ ପ୍ରକାଶ ।
ଯାଅ ଦୈବ ସେନା, ଯାଅ ପରମ ନିର୍ଭୀକ,
ତୁମରି ବିଜୟ-ହାସ୍ୟ ବିଜୟୀ ସୈନିକ—
ଦେଖି ହେଉ ସଙ୍କୁଚିତ ! କାଳର ଫୁତ୍କାର
ସକଳ ବିକୃତ କରି ଦିଏ ପରିଷ୍କାର ।
ଜାଣେ ନା ଯେ ତୁମ ଭଳି ବୀରର ସମ୍ମାନ
ଶର୍ବ ପରାକ୍ରାନ୍ତ ହେଲେ ବର୍ବର ସମାନ !
ବର୍ବରର ସତ୍ୟ ଧର୍ମ ନୁହେଁ କେବେ ବୃଥା, —
ମହାଜାତି ଧର୍ମ ନାମେ ବର୍ବରତା ପ୍ରଥା !

[ ୧୯୩୭



ଟୀକା—

# *କୌଣସି ପ୍ରଣୟୀଙ୍କ ଉଦ୍ଦେଶ୍ୟରେ

—୧—

ପରୁଷ ପରଶେ ଫୁଲ୍ ପଡ଼ିବ ତ ଝଡ଼ି,
ଝଡ଼ିବ ଶ୍ୟାମଳ ପତ୍ର ! ପାରିବ କି ଧରି ?
ବିବିଧ ରଞ୍ଜନ ସ୍ପୃହା ବିଫଳ ପ୍ରୟାସ,
କ୍ଷୁଦ୍ରକଳା ଶିଳ୍ପେ କରେ କାଳ ଉପହାସ !
କୁସୁମର ଶେଷ ଦଶା ନ ପାରିବ ଦେଖି,
ତେଣୁ ବାସ୍ତବତା ସତ୍ୟ ଯାଉଛ ଉପେକ୍ଷି ?
ଆପଣା ଅଜ୍ଞତା-ମୋହେ ସିଦ୍ଧ ରୂପତୂଳି,
କେତେଦିନ ଜରା ମୃତ୍ୟୁ ନେବେ ଦେବ ଧୂଳି ?
ଶୁଣୁ ନ ଅଦୂରେ ଶୁଭେ କାଳ ଆଗମନୀ ?
କାଚ ହେବ କାଚ ଅଙ୍କ ଦଶରେ ଯା ମଣି ।
କରିଆରିଥାନ୍ତ ମଣି ! କାହିଁ ସେ ପୌରୁଷ ?
ଭଲକୁ କରୁଛ ହେଳ, ସତ୍ୟ ବିଷଦୃଶ !
ଯେ ମରଣେ କର ଭୟ ତହିଁ ମ୍ରିୟମାଣ,
ତେବେ ଶିଳ୍ପୀ ହେବ ଲଭ ଅମୃତ ସନ୍ଧାନ !

—୨—

ଝରିଲେ କୁସୁମ ତାର ରୂପ ସଉରଭ—
ଲାଗି ରହେ ଚିତ୍ତ ପଟେ, ତାର ଅନୁଭବ—
ନିର୍ଜନ ନିଶାରେ ପ୍ରାଣ କରଇ ଅକୁଳ,
ମରିଥାଇ ଜଗିଁ ଉଠେ ସେ ଅତୁଳ ଫୁଲ !

* ଅନ୍ତରଙ୍ଗ ବନ୍ଧୁଙ୍କୁ ଲିଖିତ ଭାଷାନ୍ତରିତ ପତ୍ର ।

ତେମନେ ପ୍ରୀତିରୁ ବନ୍ଧୁ ସୁଧା ପାଇ ଥିଲି ?
ପ୍ରୀତିବନ୍ୟା ତୁମ ଲାଗି ବହିବ ଉଜାଣି !
ଯଉବନ ଗଲେ ଜରା ହେବ ସଉବନ,
ତୁମ୍ଭ ପ୍ରୀତି ଶୁଷ୍କ କାଷ୍ଠ ଅଥବା ଚନ୍ଦନ —
ପଡ଼ିବ ସେ ଦିନ ଧରା ! କାହିଁ ପାଇଁ ଡର ?
ପାଷାଣରେ ହେଲେ ଘଷି ପୀରତି ସୁନ୍ଦର !
କାଠକୁ କରୁଛ ଯତ୍ନ, ଦେଖି ନ ଚନ୍ଦନ !
"ଗଲା ଗଲା ରୂପ" ବୋଲି ହୃଦୟ ସ୍ପନ୍ଦନ —
ଦିବସେ ସହସ୍ରଥର ! କର ଅତି ଯତ୍ନ !
ବଢ଼ିଯାଏ ଅବହେଳା, ନାହିଁ ମିଳେ ରତ୍ନ !

— ୩ —

ହେବାର ଯାହା ହେଉ ! କାହିଁକି ଅକୁଳ ?
ପୁଣି ଶୂନ୍ୟ ବ୍ରତତୀରେ ପରିପୂର୍ଣ୍ଣ ଫୁଲ !
ଗଲେ ପୁରାତନ ନବୀନର ଆଗମନ,
ସବୁ ବିବର୍ତ୍ତନ ମେଳେ ବିକଶେ ଜୀବନ !
ହସନ୍ତ ଦେବତା, ଆଉ କିବା ଦାନ୍ତଭୟ ?
ଆବର୍ତ୍ତନେ ବିବର୍ତ୍ତନେ ଜୀବନର ଜୟ !
ଜୀବନ ଅମୃତ ରୂପ ପୀରତି ବିକାଶ .
ମୃତ୍ୟୁ ଝାମ୍ପାଛୁ ଦେଲେ ସବୁ ରହେ ପ୍ରୀତି-ହାସ !
ସେ ରୂପ ଲୋଡ଼ିବ ନାହିଁ ଶୃଙ୍ଗାର ରଚନା,
ସେହିର ତାପେ ନିବାଇବ ତା ପ୍ରୀତି ମୂର୍ଚ୍ଛନା;
ଜାଣେନା ଆଶଙ୍କା, ଭୀତି, ରଖିବା ଗୋପନ,
ଶତ ଘୂର୍ଣ୍ଣି-ଝଞ୍ଜା ଜାଣି କରଇ ବରଣ ।

# ନରଦେବତା

୧—ଶୁଣିଲି ମୁଁ ଆଧୁନିକ ନରପତି ଜଣେ
ଏ ଭାରତ ଭୂମେ—ନୁହେଁ ପ୍ରତେ—ସ୍ୱପ୍ନ ମଣେଁ !—
ଆପଣାର ରାଜ୍ୟେ ଶୁଣି ଦୁର୍ଭିକ୍ଷ ଆସନ୍ନ—
ତେଜିଛନ୍ତି ସ୍ୱେଚ୍ଛାକ୍ରମେ ବେଳାଏ ଅଶନ ।
ରାଜଭୂଷା ବ୍ୟସନରେ ଦେଇ ଜଳାଞ୍ଜଳି,
କରୁଛନ୍ତି ଆରାଧନା ଦନ୍ତେ ତୃଣ ଧରି—
ଦୁଃସ୍ଥ ପ୍ରଜାବର୍ଗ ଲାଗି; ସ୍ମରି ଅମଙ୍ଗଳ—
ନୟନୁଁ ଝରଇ ଅଶ୍ରୁଧାର ଅବିରଳ !
ଭାଳି ଧୀନ-ଧୈର୍ଯ୍ୟ ମୋର ନୁହଇ ସମ୍ଭାଳି
ଦେବତ୍ୱର ମୋହାବେଶ ଆପେ ଉଠେ ଜଳି !
ଯେ ଦେଶେ ଏସନ ରାଜା ଚିର ଅବିପନ୍ନ
ସେ ଦେଶେ ମରଣ ସିନା ମଧୁର ସ୍ୱପନ ?
ଯେ ଦେଶେ ଏସନ ନର-ଦେବତା ମୂଜାସ୍ତି
କି ଭଗ୍ନ ଭାବନା ଗ୍ରାସ କରିବ ତାହାରି ?
୨—ଧିକ୍କ ସେହୁ ରାଜା ଯାର ପରଜା ଅଶେଷ,
ପ୍ରାଣ ସନମାନ ଲାଗି ଯାନ୍ତି ପରଦେଶ ।
ପର ରାଜ୍ୟେ ପଥେ ଘାଟେ କରନ୍ତି ଶୟନ,
ଚିର ଭିକ୍ଷା-ଆଶୀ ଶୂନ୍ୟ ଅଶନ ବସନ,
ଶ୍ୱାନ ଚିବା ସମ ପଥେ ଭଜନ୍ତି ମରଣ,
ତ୍ୟଜି ନିଜ ବସବାସ ପ୍ରବାସ ବରଣି,
ବରନ୍ତି ଅକ୍ଳେଶେ ଶୀତ-ବରଷା-ଜଷଣି,
ରାଜ-ପୀଡ଼ା ଦୁର୍ନୀତିରୁ ନୁହେଁ ଯା ଦୂଷଣ ।

ସେ ନର-ପିଶାଚ ତାର ଜନମକୁ ଧିକ,
ଚିର ଭ୍ରାନ୍ତ ତାର ସୁଖ-କଳ୍ପନା ଅଳୀକ ।
ଜାଣି ସେ ବଢ଼ାଏ ଆତ୍ମ-ଅପମାନ-ତାପ
ତା ନାମ ଧରିବା ତୁଣ୍ଡେ ଭାଳେ ପ୍ରାଣୀ ପାପ ।
ପାପଗ୍ରହ ବୋଲି ଅପସୃତ ଘୃଣୀ ଜ୍ଞାନୀ
ଜଇଁ ଥାଇ ମରେ ସେହୁ ପାରେ ନାହିଁ ଜାଣି ।

—ଘ—

ଏ ଭାରତେ ଥିଲେ ରାଜା—କହେ ଇତିବୃତ୍ତ—
ବିପନ୍ନ ମାନବ ଲାଗି ପରମ ଅମୃତ—
ଅଣିବା ଆଶାରେ ତେଜି ଗଲେ ରାଜଗାଦି,
ହୃଦସ୍ଥଶୋଣିତ ଦାନେ ହେଲେ ସର୍ବତ୍ୟାଗୀ,
ଛେଦିଲେ ସ୍ୱହସ୍ତେ ପ୍ରଜା ଲାଗି ହୃଦପ୍ରୀତି,
ବରିଲେ ସନ୍ନ୍ୟାସ ! ଜାଲ ଯାଇଅଛି ବ୍ରତ !
ପୁଣ୍ୟଶ୍ଳୋକ ରାଜନ୍ୟଙ୍କ ତୁମେ ବଂଶଧର,
ମରୁଦ୍ୟାନ ଫୁଲ ସମ ଦିଶୁଛ ସୁନ୍ଦର ।
ସେ ଆଦର୍ଶ ଅଗ୍ନି ଜାଲେ ଅଙ୍ଗାର-ମାଣିକ୍ୟ,
ରକ୍ଷକର ନୀତି ସନ୍ଧି ସ୍ୱାର୍ଥ ଅରସିକ,
ଶ୍ୱାପଦ-ବୁଭୁକ୍ଷା ଇଲେ ଶତ ରଙ୍କ-ପ୍ରାଣେ !
ପରଜା ଦୁର୍ଦ୍ଦିନ ଶୁଣୁଛ କି ଅବଧାନେ !
ନ ଖାଇ ମରିନି ରାଜା, ମରିଛି ଅଜାଦେୟ
ନମସ୍ୟ ଅମୃତ-ରାଜ୍ୟ ଭୋଗ ନିର୍ବିବାଦେ ।



ବଢେ ଶତ ନିଷ୍ଠୁରତା, ଖସଇ କ୍ଷୁଦ୍ରତା,
ଜର୍ଜରାଏ ଅଗ୍ନିଦାହୁଁ ପୀରତ ମମତା ।'

—୪—

ସେ ପ୍ରୀତି ସେ ରୂପ ଛାଡ଼ି ଜୀବନର ସାର
ଅନ୍ୟ ଯେତେ ରୂପ ଅଭ୍ର ଖାଲି ହାହାକାର ।
ଭାବୁଛ ଜୀବନ ରସ ପିଇବ ନିଗାଡ଼ି ?
ଜରାରେ ଯୌବନ ସୃଷ୍ଟି ? ମୃତ୍ୟୁ ମୁଖେ କାଳି
ସହିଇ କି କାଳ ଏତେ ଆତ୍ମ-ପ୍ରବଞ୍ଚନା ?
ଲତାକୁଞ୍ଜ ଅନ୍ତରାଳେ ଶୃଙ୍ଗାର ରଚନା—
ଲୁପ୍ତ ହେବ ଦିନେ ! ବନ୍ଧୁ ଆସିଲେ ବରଷା !
ଭାଲିଛ ସେ ଦିନ କିବା ପ୍ରାଣର ଭରସା ?
ପୀରତ ଲୁଟିବେ ପିତା, ଭୋଗେ ଅହମତା,
ମୃତ୍ୟୁ ତହୁଁ ଶତଗୁଣି ବାଧିବ ସେ ବ୍ୟଥା ।
ଝରପଡ଼ୁ ଫୁଲ ! ନଦୀ ବହୁ ଯାଉ ଦୂରେ !
ଭାଙ୍ଗୁ ଭୋଗ ସଂକୀର୍ଣ୍ଣତା ! କୋଟି ପଲ୍ଲୀପୁରେ-
ଉଚ୍ଛୁଳୁ ଆନନ୍ଦ ଗାନ ! କ୍ଷୀଣ ସେ ରୂପସୀ—
କୋଟିରୂପେ ତା ମାଧୁର୍ଯ୍ୟ ଉଠୁନା ବିକଶି !
ଭୟ କିବା ? ରୂପ ଅଭ୍ର ଯେବେ ହୋଇ କ୍ଷୀଣ,
ଅକାଳେ ମରଣେ ପ୍ରୀତି ଲଭିବ ବିଲୀନ !

[ ୧୯୬୮ ]

